( ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଦ୍ୱାରା ଆୟୋଜିତ
୪ର୍ଥ ନିଖିଳ ଓଡ଼ିଶା ଗୀତିନାଟ୍ୟ ପ୍ରତିଯୋଗିତା—୧୯୮୯ ପାଇଁ
ଶ୍ରେଷ୍ଠ ପାଣ୍ଡୁଲିପି ଭାବେ ଗୃହୀତ )

ମହାନ୍ ପୌରାଣିକ ଗୀତିନାଟ୍ୟ

# ଅହଲ୍ୟା ଉଦ୍ଧାର


ରଚନା :

**ଶ୍ରୀ ଗୋବିନ୍ଦ ଚନ୍ଦ୍ର ଶତପଥୀ**



ପ୍ରକାଶିକା :

**ଶ୍ରୀମତୀ ସାବିତ୍ରୀ ଶତପଥୀ**
ଘର ନଂ ୨/୩-୨ଟି: ଅର୍: ଏ: (ଫ୍ଲାଟ୍)
ୟୁନିଟ୍ ନଂ ୯, ଭୁବନେଶ୍ୱର-୨

ପ୍ରଚ୍ଛଦପଟ :

ଶ୍ରୀ ବଳଦେବ ମହାରଥୀ

ମୁଦ୍ରଣ :

ଶ୍ରୀ ରାଧାନାଥ କୋ-ଅପରେଟିଭ ପ୍ରେସ୍,
ବାଲୁବଜାର, କଟକ

ପ୍ରଥମ ସଂସ୍କରଣ : ଜାନୁୟାରୀ-୧୯୯୦

ଶୋଭନ—ଟ ୯-୦୦ ମୂଲ୍ୟ : ଛ' ଟଙ୍କା ମାତ୍ର

## ଚରିତ୍ରଗଣ

**ପୁରୁଷ**

୧ । ରାମଚନ୍ଦ୍ର
୨ । ଲକ୍ଷ୍ମଣ
୩ । ବିଶ୍ୱାମିତ୍ର
୪ । ଗୌତମ
୫ । ଉଦ୍ଦାଳକ
୬ । ଇନ୍ଦ୍ର
୭ । ଦାସକାଠିଆ ଗାୟକ
୮ । ଦାସକାଠିଆ ପାଳିଆ
୯ । ଋଷିକୁମାରଗଣ

**ସ୍ତ୍ରୀ**

୧ । ଅହଲ୍ୟା
୨ । ସଖୀ

# ଉତ୍ସର୍ଗ

ମୋର ଧର୍ମପତ୍ନୀ ଶ୍ରୀମତୀ ସାବିତ୍ରୀ ଶତପଥୀଙ୍କୁ

ଲେଖକ

## ପ୍ରଥମ ପରିବେଷଣ—ତା ୭-୧୧-୧୯୮୪

ଶୁଭଶ୍ରୀ ସାଂସ୍କୃତିକ ପରିଷଦ, ଭୁବନେଶ୍ୱର-୭

ସ୍ଥାନ : ଜୟଦେବ ଭବନ ପ୍ରାଙ୍ଗଣ, ଭୁବନେଶ୍ୱର

ପ୍ରଯୋଜନା : **ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ, ଭୁବନେଶ୍ୱର**

ନିର୍ଦ୍ଦେଶନା : ଶ୍ରୀ ଗୋବର୍ଦ୍ଧନଚନ୍ଦ୍ର ଶତପଥୀ

ସଙ୍ଗୀତ ନିର୍ଦ୍ଦେଶନା : ଶ୍ରୀ ବ୍ରଜକିଶୋର ପାଣ୍ଡବ

ଗୀତିନାଟ୍ୟରେ ଅଂଶ ଗ୍ରହଣ କରିଥିଲେ :

ରାମଚନ୍ଦ୍ର—ଶ୍ରୀ ଦେବରଞ୍ଜନ ସାହ
ଲକ୍ଷ୍ମଣ—ଶ୍ରୀ ପ୍ରଦୀପ ମହାପାତ୍ର
ବିଶ୍ୱାମିତ୍ର—ଶ୍ରୀ ଭବାନୀ ଶଙ୍କର ମହାପାତ୍ର
ଗୌତମ—ଶ୍ରୀ ଗିରିଶ ଚନ୍ଦ୍ର ଶତପଥୀ
ଇନ୍ଦ୍ର—ଶ୍ରୀ ସଞ୍ଜିବ କୁମାର ଦାଶ
ଉଦ୍ଘାଟକ—ସେଖ ଅବଦୁଲ୍ କଲମ୍
ଗାୟକ—ଶ୍ରୀ ଦେବାଶିଷ ରଥ
ପାଳିଆ—ଶ୍ରୀ ସଂଗ୍ରାମ କେଶରୀ ସାହୁ
ଋଷିକୁମାର—ଶ୍ରୀ ଦେବଦ୍ୟୁତି ମହାନ୍ତି ଓ ଶ୍ରୀ ପଙ୍କଜ କୁମାର ଶତପଥୀ
ଅହଲ୍ୟା—ସୂର୍ଯ୍ୟକୁମାରୀ
ସଖୀ—ଶ୍ରୀମତୀ ରାଣୀ ସିଂ

ସଙ୍ଗୀତାଂଶେ :

ହାରମୋନିଅମ—ଶ୍ରୀ ବ୍ରଜକିଶୋର ପାଣ୍ଡବ
ଘଞ୍ଜେଲନ୍—ଶ୍ରୀ ଗଦାଧର ସାହୁ
ତବଲା ଓ ହାରମୋନିଅମ୍—ଶ୍ରୀ ସମରେନ୍ଦ୍ର ନାୟକ
ହାରଓନେଟ୍—ଶ୍ରୀ ନେହାନନ୍ଦ ଦାସ
ବଗୁଲ—ଆର୍. ବିଶ୍ୱନାଥ
ଯୋଡ଼ନାଗରା—ଶ୍ରୀ ପ୍ରକାଶଚନ୍ଦ୍ର ସାହ
ସ୍ମାରକ—ଶ୍ରୀ ଆର୍ତ୍ତତ୍ରାଣ ମିଶ୍ର ଓ ଶ୍ରୀ ଅରୁଣ କୁମାର ଦାଶ
ସ୍ୱର—କୁମାରୀ ଅମିତା ସ୍ୱାଇଁ, କୁମାରୀ ନମିତା ପଟ୍ଟନାୟକ, କୁମାରୀ କୃଷ୍ଣପ୍ରିୟା ମହାନ୍ତି

ରୂପସଜ୍ଜା—ଉମାଶ୍ରୀ ଚହାଳପୁ, ଭୁବନେଶ୍ୱର-୨

ଆଲୋକ—ସୋନୋ ଲାଇଟ୍, ଭୁବନେଶ୍ୱର

ଶବ୍ଦ—ବନଦୁର୍ଗା ଇଲେକ୍ଟ୍ରିକାଲ୍ସ, ଭୁବନେଶ୍ୱର

# ଏକ ଆଲୋଚନା

ବିଂଶଶତାବ୍ଦୀର ଚତୁର୍ଥ ପଞ୍ଚମ ଓ ଷଷ୍ଠ ଦଶକ ଯେପରି ହେଉଛି ଓଡ଼ିଆ ମଞ୍ଚ ନାଟକର ସ୍ୱର୍ଣ୍ଣଯୁଗ, ସେହିପରି ଏ ଶତାବ୍ଦୀର ପ୍ରଥମ ଦ୍ୱିତୀୟ ଓ ତୃତୀୟ ଦଶକ ହେଉଛି ଓଡ଼ିଆ ଯାତ୍ରା ଗୀତିନାଟ୍ୟର ସ୍ୱର୍ଣ୍ଣଯୁଗ । ଏହି ସମୟରେ ତତ୍କାଳୀନ ବହୁ ପ୍ରତିଭାବାନ୍ ଗୀତିନାଟ୍ୟକାର ସେମାନଙ୍କ ସମୃଦ୍ଧ ପ୍ରତିଭା ବଳରେ ଓଡ଼ିଆ ଗୀତିନାଟ୍ୟକୁ ଏକ ସମ୍ମାନଜନକ ତଥା ଜନମାନସ ରଞ୍ଜନ-ଧର୍ମୀ ନାଟ୍ୟ-କଳାରେ ରୂପ ପ୍ରଦାନ କରିପାରିଥିଲେ । ...ଯେକୌଣସି କାରଣରୁ ହେଉ ବିଗତ ଚତୁର୍ଥ ଦଶକ ପ୍ରାରମ୍ଭ କାଳରୁ କିନ୍ତୁ ଗୀତିନାଟ୍ୟର ସୂତ୍ର ଛିନ୍ନ ହୋଇଗଲା । ଆମର ମୁକ୍ତାକାଶ ମଞ୍ଚମାନଙ୍କରୁ ଏହି ପାରମ୍ପରିକ ଗୀତିନାଟ୍ୟର ରଚନା ଓ ଅଭିନୟ ଲୋପପାଇଗଲା । .. ସମୟର ଗତିପଥରେ ବହୁ ସୃଷ୍ଟିର ଉତ୍‌ଥାନ ପତନ ହୋଇଥାଏ । ହୁଏତ ଏହି ପ୍ରଣାଳୀରେ ଗୀତିନାଟ୍ୟର ହେଲା ପୁନରୁତ୍‌ଥାନ । ୧୯୬୦ ମସିହା ନଭେମ୍ବର ମାସ ଷୋଳ ତାରିଖରେ କଟକ ଆକାଶବାଣୀ କେନ୍ଦ୍ରରୁ ବୈଷ୍ଣବପାଣିଙ୍କ ଗୀତିନାଟ୍ୟ ରଙ୍ଗସଭା ପ୍ରସାରିତ ହେଲା । ସେହି ଦିନଠାରୁ ଏ ଅବଧି ଆମର ବହୁସଂଖ୍ୟକ ଲେଖକ ପାରମ୍ପରିକ ଗୀତିନାଟ୍ୟର ଧାରାରେ ଗୀତିନାଟ୍ୟମାନ ରଚନା କରି ଆସୁଛନ୍ତି ଓ ଏହା ବେତାର ଦୂରଦର୍ଶନ ତଥା ବହିନ୍ଦ ସହର ଓ ପୁରପଲ୍ଲୀମାନଙ୍କରେ ମଞ୍ଚସ୍ଥ ହେଉଅଛି ।

ଶ୍ରୀ ଗୋବିନ୍ଦଚନ୍ଦ୍ର ଶତପଥୀ ହେଉଛନ୍ତି ସାମ୍ପ୍ରତିକ କାଳର ଜଣେ ଉତ୍ସାହୀ ଓ ସମର୍ଥ ଗୀତିନାଟ୍ୟକାର । ଗୋଟିଏ ସଫଳ ଗୀତିନାଟ୍ୟ ରଚନା ପାଇଁ ଯେଉଁ ଉପାଦାନ ବା ଆଧାର ପ୍ରୟୋଜନ, ଯଥା : ସାଙ୍ଗୀତିକତା ଓ ଗଦ୍ୟ ସଂଳାପର ଆନୁପାତିକ ଭାରସାମ୍ୟ ରକ୍ଷା ସହିତ ପାରମ୍ପରିକ ଧାରା । ଯାହାକୁ ଗୀତିନାଟ୍ୟର ହୃତ୍‌ପିଣ୍ଡ କୁହାଯାଏ । ସେସବୁର ସୁନିପୁଣ ପ୍ରୟୋଗ ଓ ନାଟକୀୟ ଗଳ୍ପାଂଶର ସହଜ ସ୍ୱଚ୍ଛଳ ଗତି ଓ ବିକାଶ ସହିତ ନାଟକର ମୌଳିକ ଧର୍ମ ଦ୍ୱନ୍ଦ୍ୱ, ସଂଶୟ, ସଂଘର୍ଷ, ଉତ୍କଣ୍ଠା, ଆବେଗ ଓ ଚରମ ପରିଣତି ସବୁର ଯଥାର୍ଥ ସମନ୍ୱୟ ରକ୍ଷାକରି ଗୀତିନାଟ୍ୟ 'ଅହଲ୍ୟା ଉଦ୍ଧାର'ଟି ରଚିତ ହୋଇଥିବାରୁ ଏହା ଏକ ରସୋତ୍ତୀର୍ଣ୍ଣ ହୃଦୟସ୍ପର୍ଶୀ ଗୀତିନାଟ୍ୟର ମର୍ଯ୍ୟାଦା ରକ୍ଷାକରି ପାରିଛି ।...ଏଥିପାଇଁ ମୁଁ ଶ୍ରୀ ଶତପଥୀଙ୍କୁ ସାଧୁବାଦ ଜଣାଇବା ସଙ୍ଗେ ସଙ୍ଗେ ଆଶାକରୁଛି, ସେ ଜଣେ ନିଷ୍ଠାପର ସାଧକରୂପେ ତାଙ୍କର ଏହି ସାରସ୍ୱତ ଯାତ୍ରାପଥର ଗତି ଅବ୍ୟାହତ ରଖି ଆମ ଗୀତିନାଟ୍ୟ ଭଣ୍ଡାରକୁ ସମୃଦ୍ଧ କରିବେ ।

ଗୋପାଳ ଛୋଟରାୟ

# ଗୀତିନାଟ୍ୟ ସମ୍ବନ୍ଧରେ ପଦେ

ନିଜ ଜ୍ଞାତସାରରେ ହେଉ ବା ଅଜ୍ଞାତରେ ହେଉ, 'ଅଗ୍ନିରେ ପଡ଼ିଲେ' ସେ ଦାହ କରିଥାଏ । ସେହିଭଳି ବିଧିସୃଷ୍ଟା-ପତିଗତପ୍ରାଣା-ଅହଲ୍ୟା ଇନ୍ଦ୍ରଙ୍କଦ୍ୱାରା ନିଜ ଅଜ୍ଞାତସାରରେ ସଙ୍ଘଟିତ ହୀନ ପରିଣାମରେ ଶାପଗ୍ରସ୍ତା ହୋଇ ପାଷାଣୀ ଶରୀର ଧାରଣ କରିଥିଲେ । ଦୋଷକଲେ ଦଣ୍ଡ ମିଳିଥାଏ । ସେ ସାଧାରଣ ମାନବ ହୋଇପାରେ, ହୋଇପାରେ ଅବା ସ୍ୱୟଂ ବିଧାତାଙ୍କର ନନ୍ଦନ । ସମସ୍ତେ ଗୋଟିଏ ନିୟମରେ ବନ୍ଧା ।

ପୁଣି ଏହିଭଳି ଦୁଃଖକଷ୍ଟ ଭୋଗୁଥିବା ବ୍ୟକ୍ତିମାନଙ୍କର ଉଦ୍ଧାର ନିମନ୍ତେ ସ୍ୱୟଂ ଭଗବାନ ବୈକୁଣ୍ଠ ତେଜି ବିଭିନ୍ନ ଅବତାର ମାଧ୍ୟମରେ ଯୁଗେ ଯୁଗେ ଧରାଧାମକୁ ଓହ୍ଲାଇ ଆସିଥିବାର ପୁରାଣକାରମାନେ ବର୍ଣ୍ଣନା କରିଛନ୍ତି ।

ସେହିଭଳି ଏକ ବିଷୟବସ୍ତୁ ଉପରେ ଆଧାରିତ ଗୀତିନାଟ୍ୟ-ଅହଲ୍ୟା-ଉଦ୍ଧାର ।

**ନାଟ୍ୟକାର**

# ପ୍ରସ୍ତାବନା

( ଦାସକାଠିଆ ଗାୟକ ଓ ପାଲିଆଙ୍କର ପ୍ରବେଶ । ପାରମ୍ପରିକ ଗୀତରେ ଗଣେଶ ଓ ସରସ୍ୱତୀଙ୍କର ବନ୍ଦନା ଗାଉଛନ୍ତି । )

## ଗଣେଶ ବନ୍ଦନା

ଓଁ ନମୋ ଗଣେଶ ବିଘ୍ନେଶ ଗିରିଜା ନନ୍ଦନ ପ୍ରଭୋ
ମମ ବିଘ୍ନ ନିହତ୍ୟାସ୍ତୁ ସର୍ବସିଦ୍ଧି ପ୍ରଦୋଭବଃ ।

## ଶାରଳା ବନ୍ଦନା

ସରସ୍ୱତ୍ୟୈ ନମୋନିତ୍ୟଂ ଭଦ୍ରକାଲ୍ୟୈ ନମୋନମଃ
ବେଦ ବେଦାନ୍ତ ବେଦାଙ୍ଗ ବିଦ୍ୟା ସ୍ଥାନେଭ୍ୟୋ ଏ ବଚ
ସରସ୍ୱତୀ ମହାଭାଗେ ବିଦ୍ୟେ କମଳ ଲୋଚନେ
ବିଦ୍ୟାରୂପେ ବିଶାଳାକ୍ଷି ବିଦ୍ୟାଂଦେହି ନମୋସ୍ତୁ ତେ ।
ଶୁଣିବେ ଗୁଣିକ ଜନ ଦେଇ କର୍ଣ୍ଣ ମନ
କରିବି ବର୍ଣ୍ଣନ ଏବେ ଅହଲ୍ୟା ତାରଣ ।
ରାମାୟଣ ଗ୍ରନ୍ଥସାର ମଧ୍ୟରୁ ଉଦ୍ଧାରି
ଝଙ୍କଡ଼ ବାସିନୀ ଶ୍ରୀ ଶାରଳା ପଦେ ସ୍ମରି ।
ଗ୍ରନ୍ଥ ମଧ୍ୟେ ସାର ବେଦ ବେଦେ ରାମାୟଣ
ପାପ ତାପ ହରଇ ଶ୍ରବଣେ ସେ ଆଖ୍ୟାନ
ବାଢ଼ୁଛି ମୁଁ ଗୀତିନାଟ୍ୟ 'ଅହଲ୍ୟା ଉଦ୍ଧାର'
ଶ୍ରବଣେ ଶୁଣିଲୁ ପାପ ତାପ ହେବ ଦୂର ।
ରାମ ଚରିତ ଅତି ବିଚିତ୍ର କଥନ
ଶୁଣୁଥିଲେ ସଦାକାଳେ ଲାଗଇ ନୂତନ ।
ହାସ୍ୟ, ପ୍ରେମ, କରୁଣ, ଶୃଙ୍ଗାର ଆଦି ରସ
ଦେଇ ଏ ଗୀତିନାଟ୍ୟକୁ କରିଛି ସୁବେଶ
ଖଳଙ୍କ ସ୍ୱଭାବ ସଦା ହୋଇଥାଏ ମନ୍ଦ
ଖୁଣ୍ଟି ଖୁଣ୍ଟି ସଦା ସେହୁ କାଢ଼ନ୍ତି ଦୁର୍ଗନ୍ଧ ।
ସାଧୁଜନଙ୍କ ସ୍ୱଭାବ ଅଟଇ ମହତ
ଦୋଷ ତେଜି ଗୁଣେ ସଦା ଥାଏ ତାଙ୍କ ଚିତ୍ତ ।
ବହୁ ଆୟାସେ ରଚିଛି ଏହି ଗୀତିନାଟ୍ୟ
ସାଦରେ ଗ୍ରହଣ କଲେ ହେବି କୃତ୍ୟ କୃତ୍ୟ ।

( ସଭାସଦଙ୍କୁ ପ୍ରଣାମ ସହ ପ୍ରସ୍ଥାନ )

# ପ୍ରଥମ ଦୃଶ୍ୟ

( ବନପଥ, ରାମ ଓ ଲକ୍ଷ୍ମଣଙ୍କର ପ୍ରବେଶ )

ରାମ—ଭାଇ ଲକ୍ଷ୍ମଣ ! ଅଭିଭୂତ ହୁଏ ମନ ସନ୍ଦର୍ଶନେ ଏ ବନାନ୍ତ ଶୋଭା ।

ଗୀତ

ଦେଖ ଦେଖ ଭାଇ ଲକ୍ଷ୍ମଣ !
ଦେଖି ବନ ଶୋଭାରାଶି ଭୁଲେ ମୋ ମନରେ । (ପଦ)
ଦେଖ ଏଣେ ଏଣୀ ଯୂଥ   କ୍ରୀଡ଼ନ୍ତି ହୋଇ ହରଷିତ
ପକ୍ଷୀ କୂଜନର ସାଥେ କୋକିଳ ସ୍ୱନରେ । (୧)
ଫଳ ପୁଷ୍ପେ ବୃକ୍ଷରାଜି   ପ୍ରକୃତି ରଖିଛି ସଜି
ଚତୁର୍ଦ୍ଦିଗେ ବିରାଜିତ ଆନନ୍ଦ ଛନ୍ଦରେ । (୨)
ଅତୁଳନୀୟ ଏ ଶୋଭା   କିବା ପଟାନ୍ତର ଦେବା
ଗୋବିନ୍ଦ କହଇ ତୁଚ୍ଛ ସୁରେନ୍ଦ୍ରାସନ ରେ । (୩)

ଲକ୍ଷ୍ମଣ—ଜ୍ୟେଷ୍ଠ ! ଧନ୍ୟ ହେଲି ବିଲୋକି ମୁଁ ଏ କାନନ ଶୋଭା !

ଗୀତ

ଧନ୍ୟ ହେଲା ଜ୍ୟେଷ୍ଠ ମୋର ନୟନ
ବିଲୋକି ଏ ରମ୍ୟ କାନନ । (ପଦ)
ତନୁ ହୁଏ ପୁଲକିତ   ଦର୍ଶନେ କାନନ ବିତ୍ତ
ଯା' ପାଶେ ରାଜ ସମ୍ପଦ ନୁହେଁ ତୁଳନ । (୧)
ମନେ ମୋର ଆସେ ପ୍ରଶ୍ନ   ଏ କି ବିଧାତା ବିଧାନ
ବନେ ବିଚରନ୍ତି ପୁଣି ଦାନବ ଗଣ । (୨)
ଜନ ମନ ହରେ ଏକ   ପ୍ରାଣ ସଂହାରେ ଆରେକ
ଶାନ୍ତ ଭୀଷଣ ଏକତ୍ର ଦେଖେ ନୟନ । (୩)
ଦ୍ୱିଜ ଗୋବିନ୍ଦ କହଇ   ନ ପାରିଲି ବୁଝି ଭାଇ
ଏ କି ପକ୍ଷପାତ କରେ ଚତୁରାନନ । (୪)

ଯେ ରମ୍ୟ ବନାନ୍ତ ଶୋଭା ଜନମନ କରଇ ହରଣ
ସେ ବନେ ରହିଛି ଧାତା ନାରକୀୟ ଦୈତ୍ୟଗଣେ

କରି ନଷ୍ଟ ଭ୍ରଷ୍ଟ ମୁନି ଋଷିଙ୍କ ଆଶ୍ରମ
ପୂତ ଯଜ୍ଞ ହୋମାନଳେ ନିକ୍ଷେପନ୍ତି ଅଶୁଚୀ ପଦାର୍ଥ ।
ଦେବ ପୂଜା ଅର୍ଚ୍ଚନାରେ ଜନ୍ମାନ୍ତି ବ୍ୟାଘାତ
ଏହା କିବା ନୁହେଁ ଭ୍ରାତ
ପରଷ୍ପର ବିପରୀତ ମତି ବିଧାତାର ?
ରାମ - ନାରେ ଭାଇ ଲକ୍ଷ୍ମଣ; ନୁହେଁ ଏହା ବିପରୀତ ମତି ।
ସୁନ୍ଦରର ଉତ୍କର୍ଷ ପାଇଁ, ଅସୁନ୍ଦର ସୃଷ୍ଟି ଆବଶ୍ୟକ ।
ସେ ନିମନ୍ତେ ସୁକୋମଳ ଗୋଲାପର ପାଶେ
କଣ୍ଟକକୁ ରଚିଛନ୍ତି ଧାତା ।
ବନେ ବାସ କରୁଥାନ୍ତି
ସୁଶାନ୍ତ କୋମଳ ମନ ପଶୁପକ୍ଷୀ ସହ
ଅତିବ ଭୀଷଣାକୃତ ପଶୁରାଜ-ସିଂହ ବ୍ୟାଘ୍ର ଆଦି ।
ମୁନିଋଷି ବେଦଧ୍ୱନି ସହ, ଜ୍ଞାନମତ ପାପାତ୍ମା-ରାକ୍ଷସ
ସଦା କରିଥାନ୍ତି ସୃଷ୍ଟି ମଧ୍ୟେ ଆଲୋଡ଼ନ ।
ବିଶ୍ୱାମିତ୍ର—(ପ୍ରବେଶି) ଆଜ ସେହି ରାକ୍ଷସଙ୍କ ବିନାଶ ସାଧନେ
ନର ରୂପେ ନାରାୟଣ ଜନ୍ମି ଧରା ଧାମେ
ଉଶ୍ୱାସନ୍ତି ଧରଣୀର ଭାର ।
ରାମ—ଗୁରୁଦେବ ! (ଲକ୍ଷ୍ମଣସହିତ ପ୍ରଣାମ)
ବିଶ୍ୱାମିତ୍ର—ହେ ରଘୁକୂଳ ତିଳକ ରାମଚନ୍ଦ୍ର ! ଆଉ ଭାତୃପ୍ରାଣ ଲକ୍ଷ୍ମଣ !
ଧନ୍ୟ ତୁମ୍ଭେମାନେ ଆଜ ଧନ୍ୟ ତୁମ୍ଭ ପିତା ଦଶରଥ
ଜନନୀ କୌଶଲ୍ୟା ସୁମିତ୍ରା ।

ଗୀତ

ଧନ୍ୟ ହେ ବେନି ସୋଦର ଧନ୍ୟ ଜନନୀ ପିଅର
କୋଳେ ଧରିଛୁ ତୁମ୍ଭଙ୍କୁ ଧନ୍ୟ ଅଯୋଧ୍ୟା ନଗର । (ପଦ)
ତୁମ୍ଭ ନିମନ୍ତେ ଆଶ୍ରମ ଲଭେ ଶାନ୍ତି ଅନୁପମ
ସଂହାରେ ବଧି ତାଡ଼କା ରକ୍ଷାକଲ ଯଜ୍ଞ ମୋର । (୧)
ମଣି କାଞ୍ଚନ ସଂଯୋଗ ପଡିଲା ବାରେଣି ଯୋଗ
ଧନ୍ୟ ଲଭିଲି ଶିଷ୍ୟଙ୍କୁ ପୁଣ୍ୟ ତପବଳେ ମୋର । (୨)

କରେ ସୁକଲ୍ୟାଣ ବସ୍ତ୍ର ତୁମ୍ଭର ଏ କୀର୍ତ୍ତି ଉଗ୍ର
ଯାବତ ଚନ୍ଦ୍ରାର୍କେ ଥିବ କହଇ ଗୋବନ୍ଦ ଗ୍ଭର । (୩)

ରାମ—ଗୁରୁଦେବ ! ନୋହୁଁ ଆମ୍ଭେ ପ୍ରଶଂସାର ପାତ୍ର ।
ତୁମ୍ଭେ ଆମ୍ଭ ଶସ୍ତ୍ରଗୁରୁ
ଧନ୍ୟ ଆମ୍ଭେ ତୁମ୍ଭର ପ୍ରସାଦେ ।
ଯେ ବିଦ୍ୟା କରିଛୁ ଶିକ୍ଷା ତୁମ୍ଭ ସୁଦୟାରୁ
ସେହି ବିଦ୍ୟା ବଳେ ଆଜ ପରାଜିତ କରିଛୁ ଦାନବେ ।
ସେ ନିମନ୍ତେ ଗୁରୁଶ୍ରେଷ୍ଠ !
ବନ୍ଦନୀୟ ଅଟ ତୁମ୍ଭେ ସଦା ମହୀତଳେ ।
ବିଶ୍ୱାମିତ୍ର—ଧନ୍ୟ ତୁମ୍ଭେ ବେନି ଭ୍ରାତା,
ଅଜ ଧନ୍ୟ ମୁହିଁ ଶିଷ୍ୟରୂପେ ଲଭିଛି ତୁମ୍ଭଙ୍କୁ ।
ତୁମ୍ଭେ ଦୁହେଁ ଅତୀବ ମହତ ।
ସ୍ପର୍ଶ ମଣିର ପ୍ରଭାବେ ଦ୍ରବ୍ୟ ଗୁଣ ବୃଦ୍ଧି ସମ
ସ୍ପଷ୍ଟ ମୁହିଁ ଦେଖେ ଏବେ ନେତ୍ରେ—
ତୁମ୍ଭ ଯୋଗୁ ମୁଁ ହୋଇବି ଜଗତ ବିଖ୍ୟାତ ।
ଇତିହାସ ପୃଷ୍ଠାପରେ, ସ୍ୱର୍ଣ୍ଣାକ୍ଷରେ ଲିପିବଦ୍ଧ ରହିଥିବ
ଏ ସାମାନ୍ୟ ବିଶ୍ୱାମିତ୍ର ନାମ
ସେ ନିମନ୍ତେ ଗର୍ବିତ ମୁଁ ଆଜ ।
ଲକ୍ଷ୍ମଣ—ଗୁରୁଦେବ ! ମନେ ମମ ହୁଏ ଜାତ ପ୍ରଶ୍ନ ଏକ ଗୋଟି ।
ଅନୁମତି କରିଲେ ପ୍ରଦାନ, ପ୍ରକାଶିବି ଶ୍ରୀଚରଣରେ ତାହା
ବିଶ୍ୱାମିତ୍ର—ଅବିଳମ୍ବେ ପଚାର କୁମାର ବତ୍ସ ! କିବା ତୁମ୍ଭ ପ୍ରଶ୍ନ ?
ଲକ୍ଷ୍ମଣ—ଏ ସ୍ଥାନର ଶୋଭାବଳୀ ହରେ କ୍ଷୁଧା ତୃଷ୍ଣା ।
ଶାନ୍ତ ସ୍ନିଗ୍ଧ ମନୋରମ ଅଟେ ପରିବେଶ ।
ମନେହୁଏ ପରିତ୍ୟକ୍ତ ଆଶ୍ରମ ପରାଏ ।
ରାମ—ହଁ ଗୁରୁଦେବ ! ରହି ରହି ସୁଲଳିତ ସ୍ୱରେ
ଶୁଣାଯାଏ ରାମ ରାମ ଶବ୍ଦ ।
କିନ୍ତୁ ନ ଦିଶଇ ମାନବର ଚିହ୍ନ ବର୍ଣ୍ଣ କିଛି ।
କୁହନ୍ତୁ ହେ ଗୁରୁଦେବ ! କିବା ଏହା କାରଣ ?

ଅବା କେଉଁ ମାୟାବୀ ରାକ୍ଷସ
ରଚି ମାୟା ରହି କେଉଁ ନିଭୃତ ସ୍ଥାନରେ
କରୁଛି ପ୍ରୟାସ,
ନେବାପାଇଁ ପ୍ରତିଶୋଧ ତାଡ଼କା ବଧର ?
ବିଶ୍ୱାମିତ୍ର—ନାଁ ରାମଚନ୍ଦ୍ର ! ନୁହେଁ ଏହା ଦାନବର ମାୟା
ଘୋଷେ ସେହୁ ରାମନାମ କରିବାକୁ ଧୌତ
ଅତୀତର କଳଙ୍କ ଅଧ୍ୟାୟ ।
ସେ ସମସ୍ତେ କହିଗଲ—
ମହାପ୍ରଳୟର ଝଞ୍ଜା ଏହି ପୂତ-ଭୂମି ପରେ ।
ରାମ—ପ୍ରକାଶନ୍ତୁ ସ୍ପଷ୍ଟ ଗୁରୁଦେବ;
ନ ପାରଇ ବୁଝି କିଛି ଇଙ୍ଗିତରୁ ତବ ।
ବିଶ୍ୱାମିତ୍ର—ଶୁଣ ତେବେ ହେ ରାଘବ; କହୁଛି ପ୍ରାଞ୍ଜଳେ ।
(ଦୀର୍ଘଶ୍ୱାସ ସହ) ଏହି ଭୂମି ଥିଲା ପୂର୍ବେ
ମହାତେଜା ମୁନି ଶ୍ରେଷ୍ଠ ଗୌତମ ଆଶ୍ରମ
ଅସୀମ ଜ୍ଞାନ ଗାରମା ଅଧିକାରୀ ସେହୁ ।
ସେ ସମସ୍ତେ ସ୍ୱର୍ଗଧାମ ତେଜି ଅସନ୍ତି ଦେବତାଗଣ
ବିଦ୍ୟା ଅଧ୍ୟୟନ ଅର୍ଥେ ଏହି ତପୋଭୂମେ ।
ଲକ୍ଷ୍ମଣ—ତା ପରେ ?
ବିଶ୍ୱାମିତ୍ର—(ଦୀର୍ଘଶ୍ୱାସ) କହୁଅଛି ଶୁଣିବାକୁ ହୋଇ ଧିର ଚିତ୍ତ ।
ସହସ୍ର କୁମାରୀ ଜାତ କଲେ ବେଦବିତ୍ତ
ସେମାନଙ୍କ ମଧ୍ୟେ ଶ୍ରେଷ୍ଠ ଅହଲ୍ୟା ସୁନ୍ଦରୀ
ଦେଖି ସେ ଅନିନ୍ଦ୍ୟ ରୂପ ମୁଗ୍ଧ ହୋଇ ଧାତା
ମୁନି-ଶ୍ରେଷ୍ଠ ଗୌତମରେ କରିଲେ ପ୍ରଦାନ ।
ପତିପତ୍ନୀ ମହାନନ୍ଦେ କାଟୁଥିଲେ କାଳ
ପରସ୍ପରେ କରିଣ ବନ୍ଧନ ପ୍ରେମ ରଜ୍ଜୁ ଦ୍ୱାରା ।
ସେ ସ୍ୱର୍ଗୀୟ ପ୍ରେମ ଅତୁଳନୀୟ ଅଟେ ଧରା ଧାମେ
ଦରଶନେ ସେ ଦାମ୍ପତ୍ୟ ପ୍ରେମ, ପଲ୍ଲବିତ ହୁଏ ଶୁଷ୍କ ବୃକ୍ଷ
ନୃତ୍ୟ କରେ ମୟୂର ଦମ୍ପତ୍ତି କେକାସ୍ୱରେ ଗାଇଣ ସଙ୍ଗୀତ ।

କୋକିଳର କୁହୁତାନ ହରେ ମନ ପ୍ରାଣ ।
ସଦାନନ୍ଦ ଖେଳେ ଆଶ୍ରମରେ ।
କିନ୍ତୁ ଦେବା ଧମଇନ୍ଦ୍ର ... ...

ରାମ—ଦେବାଧମ ଇନ୍ଦ୍ର ? କି କରିଲେ ସେଠୁ ??

ବିଶ୍ୱାମିତ୍ର—ଦେବାଧମ ଇନ୍ଦ୍ର ! ଆଃ !
ସ୍ମରଣ ମାତ୍ରକେ ତାହ । ଦୁଃଖେ ହୃଦ ହୁଏ ଆନ୍ଦୋଳିତ ।
ସ୍ଥିର ହୁଏ ମନସ୍ତ ଅଚଳ ।
ନପାଏ ମୁଁ ଭାଷା ବର୍ଣ୍ଣିବାରେ ।

ରାମ—କ୍ଷମନ୍ତୁ ହେ ଗୁରୁଦେବ ଆମ୍ଭ ଅପରାଧ ।
ନାହିଁ ମୋ ପ୍ରୟାସ ଟିକେ
ଶୁଣିବାକୁ ସେ କରୁଣା ଗାଥା
ଦେଇ ତବ ମନେ ଦୁଃଖ ଲେଶ ।

ବିଶ୍ୱାମିତ୍ର—ନାଁ ରାମଚନ୍ଦ୍ର ! ଧୈର୍ଯ୍ୟଧର କ୍ଷଣ ବାକୁ କରୁଛି ବଖାଣ ।
ଅଛି ପ୍ରୟୋଜନ ତାହା ତୁମ୍ଭର ଶ୍ରବଣେ ।

ରାମ—ଗୁରୁଦେବ ?

ବିଶ୍ୱାମିତ୍ର—ହିଁ ରାମ ! ଶୁଣ ଏବେ ।
ଦେବାଧମ ଇନ୍ଦ୍ର, ବିଦ୍ୟାଶିକ୍ଷା ମାନସରେ
ମୁନିପାଶେ ଆଶ୍ରମରେ ମିଳିଲେ ହେ କାଳେ ।

ଲକ୍ଷ୍ମଣ—କି ହେଲା ତାପରେ ?

ବିଶ୍ୱାମିତ୍ର—ଏଁ ? ତାପରେ ?? ହିଁ ହିଁ ।
ଆସ ହେ ରାଘବ ସେନ ଅନୁଜ ଲକ୍ଷ୍ମଣ
କରେ ମୂର୍ଚ୍ଛି କ୍ଲାନ୍ତ ଅନୁଭବ ।
ବିଶ୍ରାମିବା କ୍ଷଣେ ମାତ୍ର ନିକଟସ୍ଥ ବୃକ୍ଷ ଛାୟା ତଳେ
ବର୍ଣ୍ଣିବି ସମସ୍ତ ବସ୍ତ୍ର ବୁଝାଇ ପ୍ରାଞ୍ଜଳେ
କରିବ ଶ୍ରବଣ ତୁମ୍ଭେ ଅହଲ୍ୟା ସମ୍ବାଦ ।

ରାମ - ଚାଲନ୍ତୁ ହେ ଗୁରୁଦେବ ! ଆସ ଭାଇ ଲକ୍ଷ୍ମଣ ।

( ସର୍ବେ ପ୍ରସ୍ଥାନ )



# ଦ୍ୱିତୀୟ ଦୃଶ୍ୟ

( ଉପବନ । ଅପରୂପା ଅହଲ୍ୟା । ଅଙ୍ଗେ ଅଙ୍ଗେ ଯୌବନର ଜୁଆର । କଟୀଦେଶରେ ଜଳ ଆହରଣ ପାଇଁ କଳସୀ । ସାଥିରେ ଆଶ୍ରମ-ବାସିନୀ ସଖୀ ଏକ କଳସୀ ସହ—ନୃତ୍ୟର ତାଳେ ତାଳେ ପ୍ରବେଶିଛନ୍ତି ।)

ଅହଲ୍ୟା—ସଖୀ ! ଅପରୂପ ସମ୍ଭାର ଏ ଉପବନ ବହେ ।
ତା ଝଟକ ହରଯାଏ ମନୁ ଅବସାଦ ।

ସଖୀ—ହଁ ସଖୀ । ଦେଖ ଏଣେ ସୁମଧୁରେ କୁଜଇ କୋକିଳ ।

ଗୀତ

ଦେଖ ଦେଖ ସଖୀ ଉପବନେ    କୁହୁକ କୋକିଳ କୁହୁତାନେ
ମନ୍ଦ ମଳୟର ଆଗମନ, ଗାଉଛନ୍ତି କି ପିକ ମଧୁସ୍ୱନେ । (ପଦ)
ନାନା ଜାତି ପୁଷ୍ପ ତରୁରାଜ    ଦେଖ ପ୍ରକୃତି ରଖିଛି ଝଞ୍ଜି
ମଳୟ ଖେଳଇ ଲୁଚକାଳି ଭ୍ରମରର ଗୁଣୁ ଗୁଣୁ ସ୍ୱନେ । (୧)
ନବ ଯଉବନା ଫୁଲରାଣୀ    କାନେ ଗାଏ ଅଳି ଭୁନ ଭୁନ
ମନକୁଆଁ ତାର ପ୍ରେମ ଗୀତି ଶିଖି ଶିଖି ହସେ ତା ଶ୍ରବଣେ । (୨)
ଏ ସମ୍ଭାର ପାଟଣ ରୂପ ତୋର    ତାରାଗଣେ ଯେସନ୍ତେ ନିଶାକର
କହଇ ଗୋବିନ୍ଦ କବି ବିଧି ଗଢ଼ିଥିଲା କେଉଁ ଉପାଦାନେ । (୩)

ଅହଲ୍ୟା—ଯାଃ, ତୁମେ ବଡ଼ ଦୁଷ୍ଟ ହେଲଣି ।

ସଖୀ—ସତେ ସଖୀ ! ଏତେ ରୂପ ଏତେ ଲାବଣ୍ୟ
ଦେଖି ବନ ପୁଷ୍ପରାଜ ହୁଅଇ ମଳିନ—
ସମକକ୍ଷ ନ ହୋଇବେ ତବରୂପ ସାଥେ ।
କୋକିଳ କୂଜନ ତେଜି ସ୍ଥିର ହୁଏ କ୍ଷଣେ,
ଶୁଣି ତାକୁ ଭାଷା ତବ ମୁଖୁ ।
ସୂର୍ଯ୍ୟାଲୋକ ହୁଅଇ ନିଷ୍ପ୍ରଭ ତବ ଜ୍ୟୋତି ପାଶେ ।
କେତେ ଯତ୍ନେ ଆହା ବିଧି ଗଢ଼ିଛି ଏ କମନୀୟ ମୁନିଲୋଭା ମୂର୍ତ୍ତି ?

ଅହଲ୍ୟା—କିବା ଏ ପ୍ରଳାପ ସଖୀ ?

ସଖୀ—ତୁହିଁଇ ପ୍ରଳାପ ସଖୀ, ତୁହେଁ ଏହା ଅଳକ ପ୍ରଶଂସା
ତବ ସମାନେକ ଆନ ନାହିଁ ମର୍ତ୍ତ୍ୟପୁରେ ।
ସ୍ୱର୍ଗୀୟ ସୁଷମା ତୁମ୍ଭେ
ବହୁତ ପୁଣ୍ୟ ପ୍ରସାଦୁଁ ଲଭିଛନ୍ତି ପତ୍ନୀରୂପେ ମହର୍ଷି ଗୌତମ ।

ଅହଲ୍ୟା—ରଖ ଗୋ ପ୍ରଳାପ ସଖୀ ସାୟଂକାଳ ହୁଏ ଅବତୀର୍ଣ୍ଣ
ପଥ ଚାହିଁଥିବେ ସ୍ୱାମୀ ମହର୍ଷି ଉତ୍ତମ
ନେଲେ ଜଳ କରିବେ ସେ ସନ୍ଧ୍ୟା ତରପଣ ।

ସଖୀ—ସତେ ତ; ଭୁଲିଥିଲି ତାହା ।
ଚାଲ ସଖୀ ଯିବା ଅବିଳମ୍ବେ । (ସର୍ବେ ପ୍ରସ୍ଥାନ)

# ତୃତୀୟ ଦୃଶ୍ୟ

( ମହର୍ଷି ଗୌତମଙ୍କ ଅଶ୍ରମ । ଯୋଗାବିଷ୍ଟ ଗୌତମ । ପ୍ରବେଶିଛନ୍ତି ଧୂପ ଦୀପ ଓ ପୂଜା ସାମଗ୍ରୀ ସହ ଅହଲ୍ୟା । ମହର୍ଷିଙ୍କର ବନ୍ଦନା କରିଛନ୍ତି । ଗୌତମଙ୍କର ଯୋଗଭଗ୍ନ ହୋଇଛି । )

ଗୌତମ—ଧନ୍ୟ ତୁମ୍ଭେ ଅପରୂପାଲାବଣ୍ୟା-ବଧୂପୁଷ୍ପୀ-ଅହଲ୍ୟା
ଆଜ ଧନ୍ୟ ମୁହିଁ ପତ୍ନୀରୂପେ ଲଭିଛି ତୁମ୍ଭଙ୍କୁ ।
ସନ୍ଦର୍ଶନେ ରୂପ ତବ ପୁଲକିତ ହୁଏ ତନୁମନ
ଆବାଲ୍ୟ ବ୍ରହ୍ମଚାରୀ-ସିଦ୍ଧଯୋଗୀ ଯୋଗ ତୁମ୍ଭେ କରିଅଛ ଭଗ୍ନ
କୋମଳ ବ୍ୟବହାରରେ କରିଅଛ ମୁଗ୍ଧ ତୁମ୍ଭେ
ପଶୁପକ୍ଷୀ ସହ ଅନ୍ତେବାସୀ ଗଣେ ।

ଅହଲ୍ୟା—ସ୍ୱାମୀ ! ଇହକାଳ ପରକାଳ ଦେବତା ମୋହର ।
ତୁମ୍ଭ ମୁଖେ ମୋ ପ୍ରଶଂସା ଘାଏ ନାହିଁ ଶୋଭା ।
ପୂର୍ବ ତପବଳୁ ମୋର
ତୁମ୍ଭ ସମ ପତିଲାଭ କରିଛି ମୁଁ ଏହି ଧରାଧାମେ ।
ସେ କାରଣେ ଗର୍ବୀତା ମୁଁ ସ୍ୱାମୀ ।
ପାଇ ତୁମ୍ଭ ସାହଚର୍ଯ୍ୟ ଭୁଲିଛି ମୁଁ ସ୍ୱର୍ଗ ଅଇଶ୍ୱର୍ଯ୍ୟ ।

ଗୌତମ—ପ୍ରିୟେ; ଏତେ ଅଇଶ୍ୱର୍ଯ୍ୟ ସମ୍ଭବ କି ମନୁଷ୍ୟର ଭାଗ୍ୟେ ?
ମନେ ମୋର ଉଦେ ହୁଏ ପ୍ରଶ୍ନ—
ମୋ ସମାନ ଆନ କେ କି ଅଛି ସୁଖୀ ଏହି ଧରାଧାମେ ?

ଅହଲ୍ୟା—ନା ସ୍ୱାମୀ; ନ କୁହ ସେକଥା
ଦିଅ ନାହିଁ ଲଜ୍ଜା ମୋତେ ଆଜ ।
ମୁଁ ଅଟେ ସାମାନ୍ୟ ନାରୀ ଅଯୋଗ୍ୟା ମୁଁ ତବ ପଦତଳେ ।
ଦୟାର ସାଗର ତୁମ୍ଭେ ।
ତୁଚ୍ଛ ତପବଳୁ ମୋର ପାଇଛି କରୁଣା ତୁମ୍ଭ—
ପତ୍ନୀରୂପେ କରିଛ ସ୍ୱୀକାର ।
କର ଆଶୀର୍ବାଦ ନାଥ—
ଜନ୍ମେ ଜନ୍ମେ ପାଏ ଯେପରି ପତ୍ନୀ ଅଧିକାର ।
ହଁ, ଆସ ପ୍ରିୟତମ, ଗୃହକାର୍ଯ୍ୟ ନୋହିଛି ସମ୍ପୂର୍ଣ୍ଣ । (ପ୍ରସ୍ଥାନ)

ଗୌତମ—ଏତେ ରୂପ ଗୁଣ ସମ୍ଭବ କି ନାରୀପାଣେ କେବେଁ ?
ପତିଗତପ୍ରାଣା ଅହଲ୍ୟା, ହରିଅଛି ଚିତ୍ତ ମୋର
ବାନ୍ଧିଅଛି ପ୍ରେମର ବନ୍ଧନେ ।
ତାହା ବ୍ୟତିରେକ ଅସାର ସଂସାର ।
ତତ୍ପ୍ରେମାହ ପାଶୁ ମୁହିଁ ନ ପାରଇ ମୁକ୍ତି ।
ହଁ ହୋଇଯାଏ ଅଧ୍ୟାପନା ବେଳ
ଏହି ଆସନ୍ତି ମୋ ଶିଷ୍ୟଗଣେ ପଠନ ଉଦ୍ଦେଶ୍ୟେ ।
( ଶିଷ୍ୟଗଣଙ୍କର ପ୍ରବେଶ ଓ ପଠନ ଆରମ୍ଭ )
ଓଁ ସହସ୍ରଶୀର୍ଷା ପୁରୁଷଃ ସହସ୍ରାକ୍ଷଃ ସହସ୍ରପାତ୍ ।
ସଭୂମିଂସର୍ବତସ୍ପୃଷ୍ଟ୍ୱା ତ୍ୟତିଷ୍ଠଦଶାଙ୍ଗୁଳଂ । ୧ ।
ପୁରୁଷ ଏବେଦଂ ସର୍ବଂଯଦ୍ଭୂତଂ ଯଚ୍ଚ ଭବ୍ୟଂ ।
ଉତାମୃତ ତ୍ୱସ୍ୟେଶାନୋ ଯଦନ୍ନେ ନାତିରୋହତି । ୨ ।

ସଖୀ—( ପ୍ରବେଶି ପ୍ରଣାମପୂର୍ବକ ଦଣ୍ଡାୟମାନ ହୋଇଛନ୍ତି )

ଗୌତମ—ପ୍ରେମଶିଳେ ?

ସଖୀ—ଆଗନ୍ତୁକ କେହି ତବ ଦର୍ଶନାଭିଳାଷୀ । (ପ୍ରସ୍ଥାନ)

ଗୌତମ—ଆଗନ୍ତୁକ ? ଦେଖିତ ଉଦ୍ଦାଳକ କିଏ ଆଗନ୍ତୁକ ।

( ଉଦ୍ଦାଳକ ପ୍ରସ୍ଥାନ । ପଠନ ପୁନରାବୃତ୍ତି ଉଦ୍ଦାଳକର ପୁନଃ ପ୍ରବେଶ )

ଇନ୍ଦ୍ରଜାଳକ—ଦେବରାଜ ଇନ୍ଦ୍ର ଉପଗତ ଆଶ୍ରମ ଦ୍ୱାରରେ ।

ଗୀତ

ଶୁଣ ଗୁରୁ ଗଉତମ ହେ ଏଥି ଆସିଛନ୍ତି ଶଚୀପତି (ପଦ)
ବାହନ ତାଙ୍କର ଶ୍ୱେତ କରୀବର କରଇ ପ୍ରମତ୍ତ ଗତି
ଦେଖିତାର ଗତି କରେ ଅରି ଧ୍ୱାନ୍ତ ହୋଇ ଶଙ୍କାକୁଳ ଅତି ।୧।
ଦକ୍ଷକରେ ବଜ୍ର ରବିକର ତେଜ ଜିଣି ପ୍ରକାଶଇ ଆସି
ଶିରରେ ମୁକୁଟ ଦଶେ ଝଟଝଟ ଖଞ୍ଜା ରତ୍ନସବୁ ମୋତି ।୨।
ଅମ୍ଳାନ ବସନ ହରେ ଜନମନ କି ଉପମା ତାଙ୍କୁ ଦେବା
ଗୋବିନ୍ଦ କହଇ ଦ୍ୱାରେ ନ୍ତ୍ତ ରହି ତବ ଦରଶନେ ମତି ।୩।

ଗୌତମ—ଦେବରାଜ ଇନ୍ଦ୍ର ମୋ ଆଶ୍ରମରେ ? (ସ୍ମିତ ହାସ୍ୟ)
ଯାଅ ଇନ୍ଦ୍ରଜାଳକ, ସସମ୍ମାନେ ଘେନିଆସ ଏଥି
( ଇନ୍ଦ୍ରଜାଳକର ପ୍ରସ୍ଥାନ ଓ ଇନ୍ଦ୍ରଙ୍କ ସହ ପୁନଃ ପ୍ରବେଶ )

ଇନ୍ଦ୍ର—ପ୍ରଣାମ ଘେନନ୍ତୁ ମୁନି ଶ୍ରେଷ୍ଠ । (ପ୍ରଣାମ କରିଛନ୍ତି)

ଗୌତମ—ସମସ୍ତ କୁଶଳତ ଅଳକା ପତି ?

ଇନ୍ଦ୍ର—ତବ ଆଶିର୍ବାଦୁ, ସମସ୍ତେ କୁଶଳେଛନ୍ତି ଅଳକା ଭୁବନେ ।

ଗୌତମ—କୁହ ଶଚିନାଥ; କି କାରଣେ ଆସିଲ ଏ ମୋର ତପୋବନେ ?
କି ଦେଇ କରିବ ମୁହିଁ ତୁମ୍ଭର ଅର୍ଚ୍ଚନା ?

ଇନ୍ଦ୍ର—ମୁନି ଶ୍ରେଷ୍ଠ ! ଶୁଣନ୍ତୁ ମୋ ଆସିବା କାରଣ—

ଗୀତ

ଗୁରୁ ଈଶ ଗଉତମ ଶୁଣ ମୋର ବାଣୀ
ଯେ କାରଣେ ଆସିଅଛୁ କହୁଛୁ ବଖାଣି
ବାରେ ଘେନ ମୋ ବଚନ;
ଶିଷ୍ୟଭାବେ ଗ୍ରହଣ କରି କର ମୋତେ ଧନ୍ୟ । ୧ ।
ତୁମ୍ଭେ ଅଟ ଗୁରୁ ତିନଲୋକେ ବନ୍ଦନୀୟ
ପୁରାଣ କାବ୍ୟ କବିତା ଶାସ୍ତ୍ର ସାର ନ୍ୟାୟ,
ତବ ପଦେ ଦେଇ ଧ୍ୟାନ
ଆପୂର୍ତ୍ତ କରିବ ମୁହିଁ ଶ୍ରେଷ୍ଠ ବିଦ୍ୟାଧନ । ୨ ।

ଜାଉଛ ତବ ଘୋଷିବ ମହୀ ଚିରକାଳ
ଦାସ ରୂପେ ଶ୍ରୀପଦେ ରହିବ ଆଖଣ୍ଡଳ,
କହଇ ଗୋବନ୍ଦ ଦାନ;
ଦେଇ ଆଶିଷ କାମନା କରନ୍ତୁ ପୂରଣ । ୩ ।

ଗୁରୁଦେବ ! ବିଦ୍ୟାଶିକ୍ଷା ଅଭିଳାଷେ ଆସିଅଛି ତବ ଶ୍ରୀଛାମୂରେ
ଶିଷ୍ୟତ୍ୱେ ଗ୍ରହଣ କରି କର ମୋତେ ଧନ୍ୟ ।

ଗୌତମ—ଧନ୍ୟ ହେଲି ଦେବରାଜ, ଶ୍ରବଣରେ ତବ ଅଭିଳାଷ
ହୋଇ ଅଧୀଶ୍ୱର ତୁମ୍ଭେ ପୂଜନୀୟ ଦେବ ସମାଜର
ଆଗ୍ରହ ପୋଷିଛ ମନେ ବିଦ୍ୟା ଅଧ୍ୟୟନେ ।

ଇନ୍ଦ୍ର—ମୁନି ଶ୍ରେଷ୍ଠ ! ବିଦ୍ୟା ଅଟେ ସମ୍ପଦରେ ସାର
ଯାବତ ସମ୍ପଦ ଅଛି ଏ ତିଲୋକ ମଧ୍ୟେ
ତୁଳନା ନୋହିବେ କେହି ବିଦ୍ୟା ସହିତରେ
ସମ୍ପଦ ଅର୍ଜନ ପାଇଁ ସ୍ଥାନ କାଳ ପାତ୍ର ହୁଏ ଲୋଡ଼ା
କିନ୍ତୁ ବିଦ୍ୟାପାଇଁ ଅବାରିତ ତାହା,
ସୁରଗଣ-ଇନ୍ଦ୍ରଠାରୁ ସାମାନ୍ୟେକ ମାନବ ପର୍ଯ୍ୟନ୍ତ
ବିଦ୍ୟା ଅଟେ ଭୂଷଣ ସର୍ବଶ୍ୟ ।
ସେ ନିମନ୍ତେ ଗୁରୁଦେବ ଆସି ଅଛି ତବ ଆଶ୍ରମରେ

ଗୌତମ—ତବ ଏ ଆଗ୍ରହ ପଥ ପ୍ରଦର୍ଶକ ହେବ ମାନବଲୋକର
ସମ୍ମତ ମୁଁ ପ୍ରସ୍ତାବେ ତୁମ୍ଭର ।
ଗ୍ରହଣ କରିଲି ମୁହିଁ ଶିଷ୍ୟତ୍ୱେ ତୁମ୍ଭଙ୍କୁ ।

ଇନ୍ଦ୍ର—ଆପଣ ମହାନୁଭବ (ଅହଲ୍ୟାଙ୍କର ପୁନଃ ପ୍ରବେଶ)

ଅହଲ୍ୟା—ପ୍ରଭୁ; ଭୋଜନ ସମସ୍ତ ତବ ହେଲାଣି ଅଗତ
ନ କର ବିଳମ୍ବ ଆଉ ଆସନ୍ତୁ ମଢରେ
ବଢ଼ାଇଣ ଦେବାଇଁ ନା—କରିବେ ଆହାର ।

ଇନ୍ଦ୍ର—( ଅହଲ୍ୟାଙ୍କ ସୌନ୍ଦର୍ଯ୍ୟରେ କିଂକର୍ତ୍ତବ୍ୟବିମୂଢ଼ )
କିଏ ଏହି ଅପରୂପ ସୌନ୍ଦର୍ଯ୍ୟ ପ୍ରତିମା ?

ଗୌତମ—ଅହଲ୍ୟା । ଧର୍ମ ପତ୍ନୀ ମୋର ।
(ଇନ୍ଦ୍ର ପ୍ରଣାମ କରିବାକୁ ହାତ ଉଠାଇବେ ବୋଲି ଉଠାଇ ପାରୁ ନାହାନ୍ତି, ତେଣୁ ତୋଳ ମାରିବାରେ ପ୍ରଣାମ ଜଣାଇଛନ୍ତି)

ଅହଲ୍ୟା ! ଦେବରାଜ ଇନ୍ଦ୍ର ଏହି,
ଶିଷ୍ୟତ୍ୱେ ମୁଁ କରିଛି ସ୍ୱୀକାର
ଆଜଠାରୁ ଅନ୍ତେଃବାସୀ ଏହି,
ଏହାଙ୍କର ଖାନାହାର କରିବ ବ୍ୟବସ୍ଥା ।

ଅହଲ୍ୟା—ଯଥାଦେଶ ସ୍ୱାମୀ; ଇନ୍ଦ୍ରସହ ଆସନ୍ତୁ ଏଥର । (ପ୍ରସ୍ଥାନ)

ଗୌତମ—ଆସ ଶଚନାଥ ( ଉଦ୍ଧାଳକ ସହ ପ୍ରସ୍ଥାନ )
(ଇନ୍ଦ୍ର ନିର୍ନିମେଷ ନୟନରେ ମୁନି ଓ ମୁନି ପତ୍ନୀଙ୍କର ଯିବା ପଥକୁ ଚାହିଁ ରହିଛନ୍ତି )

ଇନ୍ଦ୍ର— ସ୍ୱର୍ଗରାଜ୍ୟ ଅଧିଶ୍ୱର ମୁହିଁ ଆଖଣ୍ଡଳ,
ଚମତ୍କୃତ ହୁଏ ଦେଖି ଅହଲ୍ୟା ସୁଷମା;
ସ୍ୱର୍ଗେ ଛନ୍ତି ଯେତେ ଦେବୀ, ଗନ୍ଧର୍ବୀ, କିନ୍ନରୀ ସହ ଅପସରାଗଣ;
ଏ ନାରୀର ପାଦକୁ କେ ନୋହିବେ ଭାଜନ ।
ଝଟାଳେଜ ମାଣେ ଜ୍ୟୋତିରଞ୍ଜଣ ଝରାଏ
ନକ୍ଷତ୍ର ହୋଇଯିବ ସବୁ ଏ ସୁନୟନା ପାଶେ
କଳକଣ୍ଠୀ କଳରବ ଶିଖାଇବେ କୋକିଳ କାକଳୀ
ସିଂହ କଟୀ, ମତ୍ତଗଜ ଗତି—ମନମୁନି କରେ ଆକର୍ଷଣ ।
ଚନ୍ଦ୍ରରେ ଅଛି କଳଙ୍କ, କିନ୍ତୁ ନିଷ୍କଳଙ୍କ ଅହଲ୍ୟାର ମୁଖ
ଆଃ, ଦେଖିଲି ମାତ୍ରେ ପଲକ ନ ପଡ଼ୁଛି ମୋର ।
ଧନ୍ୟ ତୁମ୍ଭେ ଗୌତମ ମୁନି, କେତେ ତପସ୍ୟାର ଫଳେ
ଲଭିଛନ୍ତି ନିଷ୍କଳଙ୍କ ଲାବଣ୍ୟ ପ୍ରତିମା ।

ଉଦ୍ଧାଳକ—(ପ୍ରବେଶି) ଶଚନାଥ !

ଇନ୍ଦ୍ର—ହୁଁ ? କି ।

ଉଦ୍ଧାଳକ—ପ୍ରତୀକ୍ଷାରେ ଛନ୍ତି ତେଣେ ଗୁରୁ ଗୁରୁ ପତ୍ନୀ ।

ଇନ୍ଦ୍ର—ଏଁ ? ହଁ ଚାଲ ଉଦ୍ଧାଳକ (ଦୀର୍ଘଶ୍ୱାସ) (ଉଭୟଙ୍କର ପ୍ରସ୍ଥାନ)

———

## ଚତୁର୍ଥ ଦୃଶ୍ୟ

(ସ୍ଥାନ—ଉପବନ । ଆନମନାଭାବେ ସଖୀ ପ୍ରବେଶିଛନ୍ତି) ।

ସଖୀ—ମୁନି ଆଶ୍ରମେ ବଢିଲି ଏ ନବଯୌବନ ।
ଋତୁରାଜ ବସନ୍ତର ରାଜତ୍ୱ ପ୍ରଭାବେ
ଚତୁର୍ଦ୍ଦିଗେ ଖେଳଯାଏ ଆନନ୍ଦର ଢେଉ ।
• ମୃଦୁ ମନ୍ଦ ମଳୟର ସାଥେ
ପୁଷ୍ପ ଗନ୍ଧ ବହିଆଣି ମନ ମଧ୍ୟେ ଜଗାଏ ସ୍ପନ୍ଦନ
କୋକିଳର କୁହୁତାନ ପରିବେଶ ତୋଳିଦିଏ କରି ମାଧୁରିମା
କିନ୍ତୁ ଏତେ ଉତ୍ସବର ମଧ୍ୟେ
ନପାଏ ମୁଁ ତିଳେ ମାତ୍ର ଶାନ୍ତି ।
ବ୍ୟାକୁଳିତ ସର୍ବଦା ଅନ୍ତର ଲଭିବାକୁ ପୁରୁଷ ସାନ୍ନିଧ୍ୟ,
ପାଇବାକୁ ଟିକେ ଆଲିଙ୍ଗନ ।
କର୍ଣ୍ଣ ଚାହେଁ ଶୁଣିବାକୁ ପୁରୁଷର ପ୍ରେମ ନିବେଦନ ।
ହେଲେ ନିଷ୍ଫଳ ମୋ କୁସୁମିତ ଏ ନବ ଯୌବନ
ବନ୍ୟ ପୁଷ୍ପ ପ୍ରାପ୍ତ ହୁଏ ନ ପାଇଣ ଦେବତାର ପୂଜା ।

ଇନ୍ଦ୍ର—(ପ୍ରବେଶି) ସେହି ବନ୍ୟପୁଷ୍ପ ଲୋଭେ,
ସ୍ୱୟଂ ଦେବରାଜ ଇନ୍ଦ୍ର ଆଜ ଭ୍ରମଇ କାନନେ ।

ସଖୀ—ଆପଣ ?

ଇନ୍ଦ୍ର—ହଁ ସଖୀ ପ୍ରେମଶୀଳେ ! ଇନ୍ଦ୍ର ମୁହିଁ ସ୍ୱର୍ଗ ଅଧିପତି ।
ଜୀବନ ଯୌବନ ତବ କରିବ ସାର୍ଥକ,
ତୋଳି ନେବି ତୁମ୍ଭଙ୍କୁ ମୁଁ ମୋର ସ୍ୱର୍ଗ ଧାମେ ।

ସଖୀ—ପରିହାସ କରୁଛନ୍ତି ଏହା ?
ଏତେ ଐଶ୍ୱର୍ଯ୍ୟ କି କେବେ ଜୁଟିପାରେ ଭାଲେ ?

ଇନ୍ଦ୍ର—ନୁହେଁ ସଖୀ ପରିହାସ ବାଣୀ !
ତୁମ୍ଭର ରୂପ ଯୌବନ କରିବ ସାର୍ଥକ
ମଣ୍ଡାଇଣ ମୋର ଅନ୍ତଃପୁରୀ; କିନ୍ତୁ—

ସଖୀ—କନ୍ଥ ପୁଣି କବା ?
ଇନ୍ଦ୍ର—ସର୍ତ୍ତ ମୋର କରିଲେ ପୂରଣ ?
ସଖୀ—ସର୍ତ୍ତ ? କଦା ସେହ୍ନ ସର୍ତ୍ତ ?
ଇନ୍ଦ୍ର—କଥାଟିଏ ସଖୀ; ନୋହିବ କୁଣ୍ଠିତ କେଭେଁ ପାଳିବାରେ ସର୍ତ୍ତ ?
ସଖୀ—ଦେଉଛି ବଚନ ପ୍ରଭୁ ! ପାଳିବ ମୁଁ ସର୍ତ୍ତ ତୁମ୍ଭ ଅକ୍ଷରେ ଅକ୍ଷରେ
ଗ୍ରହଣ କରଣ ମୋତେ ନାଗକନ୍ୟା କର ମୋ ସାର୍ଥକ ।

ଇନ୍ଦ୍ର—ଶୁଣ ସଖୀ ସର୍ତ୍ତ ମମ; ତୁମ୍ଭଙ୍କୁ ଗ୍ରହଣ ପୂର୍ବ୍ବୁ
ଥରେ ମାତ୍ର କ୍ଷଣେ ହେଁ ମୁହିଁ
ଲାବଣ୍ୟମୟୀ ଅହଲ୍ୟା ଅଙ୍ଗସଙ୍ଗ ସୁଖ ।
ସଖୀ—ଦେବରାଜ ଏତେ ମାତ ତୁମ୍ଭେ ?
ଇନ୍ଦ୍ର—ମାତ ନୁହେଁ ସଖୀ ମୁହିଁ,
ଦର୍ଶନେ ଅହଲ୍ୟା ଶୋଭା ହୋଇଛି ପାଗଳ
ପାଇଲେ ତା ଅଙ୍ଗସୁଖ, ଜୀବନଟା ହେବ ମୋର ଧନ୍ୟ ।
ଆଜ ତା'ପରେ ତୁମ୍ଭଙ୍କୁ ମୁଁ ରାଣୀକରି,
ବସାଇବ ସ୍ୱର୍ଗ ସିଂହାସନେ ।
ସଖୀ—କିନ୍ତୁ······ ?
ଇନ୍ଦ୍ର—ପ୍ରିୟ ସଖୀ ଅଟ ତୁମ୍ଭେ ସେ ମନୋହାରୀର,
ଯାଅ ବେଗେ ଏହି ଶୁଭ ଲଗ୍ନେ—

ଗୀତ

ପ୍ରେମଶୀତଳ ପ୍ରେମମୟୀ ଯାଅ ଶୁଭ ଲଗନେ
ଜାଣାଇଲେ ମନବ୍ୟଥା ହସିବ ଅହଲ୍ୟା ଜାଣେ । ପଦ ।
କହିବ ତା'ରେ ବୁଝାଇ ମଦନ ଆତୁରେ ମୁହିଁ
ତା'ରେ ସଦା ଝୁରି ଝୁରି ସଜନୀ ମୁଁ ଗଲି ସରି
ସେ ଯିନା ମୋ ଗତିମୁକ୍ତି କଙ୍କର ମୁଁ ତା' ଚରଣେ । ୧ ।
ସେ'ତ ବିଧାତା ନନ୍ଦନୀ ଅଳକାଇଣ ମୁଁ ପୁଣି
ମୋ ସାଥେ ତା'ର ମିଳନ ହେବ ଯିନା ଶୋଭବନ
ମଣ୍ଡିବ ଅଙ୍କ ପଲଙ୍କ ବସି ସ୍ୱର୍ଗ ସିଂହାସନ । ୨ ।

ମର୍ତ୍ତ୍ୟର ମାନବ ଗୁରୁ ଗଉତମ ତପୀବର
ବାନର ଗଳାରେ ମୋତି ସେ କି ଜାଣେ ତା' ଆଦର
ଗୋବିନ୍ଦ କହନ୍ତି କହିବ ଭଜ ମୋତେ ଚନ୍ଦ୍ରାନନେ । ୩ ।

ସଖୀ— ନାଁ ନାଁ ନ ପାରିବ ମୁହିଁ ।

ଗୀତ

ଅମରେଶ ନନ୍ଦନ ଆଜ, ଅଜନେ ଝୁରିଛି କେ ପ୍ରାଣ ଆଜ । ପଦ ।
ଅହଲ୍ୟା ବିଧାତା ନନ୍ଦନୀ, ସତୀ ଗହଣ ସେ ଶିରୋମଣୀ
ଭର୍ତ୍ତା ଗଉତମ ମୁନିଙ୍କ ଉତ୍ତମ ତ୍ରିକାଳଦର୍ଶୀ ଅଟନ୍ତି ସେତ୍ତୁ । ୧ ।
ତା' ଘରଣୀ ପାଶେ କେ ଯିବ ବିମ୍ବାଧର ମୁଖ ଚୁମ୍ବିବ
ଏ ଅନନ୍ତବାଣୀ କହିବ କେ ପୁଣି ମୁନିକୋପାନଳକୁ ବର୍ତ୍ତିବ ସେତ୍ତୁ ।୨।
ତପେବ ମୁନି ଶାପବହ୍ନିରେ କ୍ଷଣରେ ନାହିଁ କେ ପାରିବେ
ଗୋବିନ୍ଦ କହଇ ବିଷ୍ଣୁ ଶିବ ବ୍ରହ୍ମ ମିଳିଲେ କି ତ୍ରାଣ ପାଇବେ
ସେତ୍ତୁ । ୩ ।

ନକୁହ ସେକଥା ମୋତେ ନପାରିବି ମୁହିଁ
ସତୀ ଶିରୋମଣୀ ଅଟନ୍ତି ଅହଲ୍ୟା—ପତିଗତ ପ୍ରାଣା ।
ତାଙ୍କ ପାଶେ ନପାରିବି ବଖାଣି ଏ ଅନନ୍ତ ଭାରତୀ ।
ପୁନରପି ତପିଶ୍ରେଷ୍ଠ ଗଉତମ ଜ୍ଞାତ ହେଲେ ତାହା,
ବହ୍ନିକୋପ ଦେଲେ ଅଭିଶାପ ।
ନପାରିବେ କରି ତ୍ରାଣ ବ୍ରହ୍ମା ବିଷ୍ଣୁ ଶିବ ।
ଜୀବନ ମୋ ଯାଉପଛେ ଏ କନାମ ମଧ୍ୟେ
ବଣ୍ୟ ପୁଷ୍ପ ସମ ମୁହିଁ ଝଡ଼ିଯାଏ ଏଥି
ଲୋଡ଼ାନାହିଁ ସ୍ୱର୍ଗ ସୁଖ ମୋର
ନ ପାରିବ ପାଳି ତବାଦେଶ ।

ଇନ୍ଦ୍ର—(ହସି) କି କହୁଛ ତୁମ୍ଭେ ପ୍ରେମଶୀଳେ ?
ନ ଜାଣକି ମୁହିଁ ଅଟେ ଆଖଣ୍ଡଳ-ସ୍ୱର୍ଗ ଅଧିଶ୍ୱର ?
ମୁହିଁ କରପାରେ ତ୍ରାଣ ସକଳ ଶାପରୁ ।
ଇଚ୍ଛାକଲେ ବଜ୍ରାଘାତେ ଧ୍ୱଂସ କରିପାରେ ଚରାଚର ।
ଗୌତମ ତ ସାମାନ୍ୟ ମାନବ । ସେ କି ହେବ ସମକକ୍ଷ ମମ ?

ମାନ ମୋ ବଚନ—ଯାଅ ତୁମ୍ଭେ ଅହଲ୍ୟା ନିକଟେ
ସକଳ କହିବ ତାରେ ।
ଭଜଲେ ଯେ ଆଖଣ୍ଡଳ ଦେବ ସ୍ୱର୍ଗେଶ୍ୱର
ତା ନୋହିଲେ ନେବ ବଳାତ୍କାରେ ।
ଇନ୍ଦ୍ର ମୂର୍ତ୍ତି ଶ୍ରେଷ୍ଠ ଅଟେ ତିନଲୋକ ପରେ ।
ଶ୍ରବଣେ ମୋ ବାଣୀ ଅଙ୍ଗୀକାର କରିବ ସୁନ୍ଦରୀ
ଯାଅ ପ୍ରିୟେ ନ କରଣ ଦ୍ୱିଧା
କରକାର୍ଯ୍ୟ ମୋର ଇଚ୍ଛାମତେ
ଦୁଃଖ ତବ ହେବ ଅବସାନ ।

ଇନ୍ଦ୍ର—ନାଁ ନକର ଦ୍ୱିରୁକ୍ତି ସଖୀ, ଯାଅ ଅବିଳମ୍ବେ;
ହୋଇଲେ ସଫଳ କାମ, ହସ୍ତ ଧରି ନେବ ସ୍ୱର୍ଗଧାମେ ।

ପ୍ରେମ—ତବାଦେଶ କରି ଶିରୋଧାର୍ଯ୍ୟ
ଯାଉଛି ହେ ଅମରେଶ ଅହଲ୍ୟା ନିକଟେ ।
କିନ୍ତୁ; କରେ ଅନୁରୋଧ—
ଅଘଟଣ ଘଟେ ଯେବେ କହୁ ଏ ଦାସୀରେ କରିବ ଉଦ୍ଧାର ।

ଇନ୍ଦ୍ର—ନିଶ୍ଚିନ୍ତରେ ଯାଅ ପ୍ରେମଶୀଳେ (ସଖୀର ପ୍ରସ୍ଥାନ)
ଆଃ ସୁନ୍ଦରୀ ଅହଲ୍ୟା !
ତବଦର୍ଶନ ବିବସୁ, ଏ ସଂସାର ଲାଗେ ଅତି ତୁଚ୍ଛ
ତୁଚ୍ଛ ମୋର ଅମର ସମ୍ପଦ
ଅତି ତୁଚ୍ଛ ମୋର ଇନ୍ଦ୍ର ପଦ ।
କେବଳ ମାନସୀ; ତୋର ଅଙ୍ଗସଙ୍ଗ ଲଭି ମୋହର କାମନା ।
(ପ୍ରସ୍ଥାନ)



## ପଞ୍ଚମ ଦୃଶ୍ୟ

( ସ୍ଥାନ—ଗୌତମ ଆଶ୍ରମ । ପ୍ରବେଶିଛନ୍ତି ମହର୍ଷି ଗୌତମ । )

ଗୌତମ— ଜାହ୍ନବୀ ନଦୀ ପ୍ରାନ୍ତେ ଅଛି ମୋର ଆଶ୍ରମ ।
ଦେବପୂଜା ତଥା ବିଦ୍ୟାଦାନେ ଅନ୍ତେବାସୀଗଣେ—
ବିତିଯାଏ ଦିନ ପରେ ଦିନ ।
କିନ୍ତୁ ଏହା କିବା ମହର୍ଷି ସର୍ବସ୍ୱ ? ।
ଘୋର ବନ ମଧ୍ୟ କରି ନାହିଁ ତପ ଆଚରଣ
ତପ ବିନା ଏ ଜୀବନ ଅଟେ ପଶୁତୁଲ୍ୟ ।
ନାଃ, ଯିବି ମୁହିଁ ନିବିଡ଼ କାନନେ
ଆରମ୍ଭିବି ତପ—ଏ ଜୀବନ ଉଦ୍ଧାର ନିମନ୍ତେ ।
ଅହଲ୍ୟା ! ଋଷିସୁତା !

ଅହଲ୍ୟା—(ପ୍ରବେଶି) ସ୍ୱାମି ! ସ୍ମରଣ କି କଲ ଅଧୀନାରେ ?

ଗୌତମ—ହଁ ପ୍ରିୟେ କରିଲି ସ୍ମରଣ ।
ଯାଉଛି ମୁଁ ତପ ଆଚରଣେ ନିବିଡ଼ ଅରଣ୍ୟ ।
ଥାଅ ତୁମ୍ଭେ ଏଥି ଅନ୍ତେବାସୀଙ୍କ ସହିତ ।

ଅହଲ୍ୟା—କିନ୍ତୁ ସ୍ୱାମି ! ନ ପାରିବି ରହି ମୁଁ ଏକାକି,
ତୁମ୍ଭ ବିନା ଏ ଆଶ୍ରମ ମଧ୍ୟେ ।
ଘେନି ଯିବ ନାଥ ମୋତେ ସାଥେ ।
ତୁମ୍ଭ ସାଥେ ଆଚରିବି ତପ ।

ଗୌତମ— ନାଁ ପ୍ରିୟେ ନ କହ ଏ କଥା ।

ଗୀତ

ନ କର ବାରଣ ପ୍ରିୟେ ଯିବି ତପ ଅର୍ଥେ

ଅହଲ୍ୟା—ରହିବି କପରି କହ ଏକାକିନୀ ଏଥେ ।୧।

ଗୌତମ—ରହିବ ଆଶ୍ରମେ ଅନ୍ତେବାସୀଙ୍କ ସହିତେ

ଅହଲ୍ୟା—ପତି ବିନା ଚଉଦିଗ ଶୂନ୍ୟ ପ୍ରାୟ ପ୍ରତେ ।୨।

ଗୌତମ—ତପସ୍ୟା ଯେ ଶ୍ରେଷ୍ଠ କର୍ମ ଅଟେ ବ୍ରାହ୍ମଣର
ଅହଲ୍ୟା—ପତି ବିନା ବ୍ୟର୍ଥ ସିନା ଏ ଯୌବନ ମୋର ।୩।
ଗୌତମ—ତପସ୍ୟା କରିଲେ ଚତୁର୍ବର୍ଗ ପ୍ରାପ୍ତ ହୁଏ
ଅହଲ୍ୟା—ପତିସେବା ନାରୀର କି ଚତୁର୍ବର୍ଗ ନୁହେଁ ? ।୪।
ଗୌତମ—ନ କର କଟାଳ ଯିବ ହେଉଛି ଉତ୍ତର
ଅହଲ୍ୟା—ଗୋବନ୍ଦ ଜଳ୍ପ ସହଜେ ଫେରିବ ନିକର ।୫।
ଗୌତମ—ଯାଉଛି ସୁନ୍ଦରୀ ! ଯଥାଶୀଘ୍ର ତପ ସାରି ଆସିବ ମୁଁ ଫେରି ।
ପ୍ରସନ୍ନ ଚିତ୍ତରେ ପ୍ରିୟେ ଦିଅ ଗୋ ମେଲାଣି ।
ଅହଲ୍ୟା—(ପ୍ରଣାମ କରି) ଯାଅ ସ୍ୱାମୀ, ଦେଉଛି ମେଲାଣି ।
କିନ୍ତୁ ମନ ମୋର ହୁଏ ଉଦ୍‌ବେଳିତ ।
ଜଣାଯାଏ ଏହା ବୋଧେ ଅନ୍ତିମ ସାକ୍ଷାତ ।
ଗୌତମ—ନାଁ ପ୍ରିୟେ ନ କୁହ ସେପରି ।
ସାଧ୍ୟ ନାହିଁ କାହାର ବି କେବେ
ଛିନ୍ନ କରିନେବ ମୋର ପ୍ରେମର ପ୍ରତିମା,
ଯାଉଛି ମୁଁ ଆଶ୍ରମରେ ରୁହ ନିଶ୍ଚିନ୍ତରେ ।
ପୁତ୍ର ସ୍ନେହେ ପାଳ ତୁମ୍ଭେ ଅନ୍ତେବାସୀଗଣେ—
ଦେଇ ତବ ମମତା ପୀୟୂଷ ।
ଫେରିବି ମୁଁ ସ୍ୱଳ୍ପକାଳ ଅନ୍ତେ । (ପ୍ରସ୍ଥାନ)
ଅହଲ୍ୟା—ଚାଲିଗଲେ ପ୍ରିୟତମ ଅହଲ୍ୟା ଦେବତା
ଏକାକିନୀ କରି ମୋତେ ଏ ଆଶ୍ରମ ମଧ୍ୟେ
କିପରି କାଟିବି କାଳ ତୁମ୍ଭ ବ୍ୟତିରେକ ?
ହେ ବିଧାତା ସୃଷ୍ଟି କର୍ତ୍ତା ପିଅର ମୋହର, ଦୟାକର ବାରେ
ସ୍ୱଳ୍ପକାଳ ତପସ୍ୟାରେ ସିଦ୍ଧିଲାଭ କରି
ସ୍ୱାମୀ ମୋର ମିଳନ୍ତୁ ମୋ ପାଶେ ।
ଏତିକି ମିନତି ମାତ୍ର ତବ ପଦତଳେ । (ପ୍ରସ୍ଥାନ)

———

## ଷଷ୍ଠ ଦୃଶ୍ୟ

( ବିଶ୍ୱାମିତ୍ରଙ୍କ ସହ ରାମ ଲକ୍ଷ୍ମଣଙ୍କର ପ୍ରବେଶ )

ରାମଚନ୍ଦ୍ର — ତା'ପରେ କି ହେଲା ଗୁରୁଦେବ ?
ଜାଣିବାକୁ ମନ ମୋର ହୁଅଇ ଉଦ୍‌ବେଗ

ବିଶ୍ୱାମିତ୍ର — ରାମଚନ୍ଦ୍ର ! ହଁ ଦିନ ପରେ ଦିନ ଗଲା ବିତି ।
ତପ ରତ ମହର୍ଷି ଗୌତମ ।
ପତି ବିନା ଅହଲ୍ୟା ସୁନ୍ଦରୀ ଅତି ଦୁଃଖେ କାଟୁଥିଲେ କାଳ ।
ଏ ସୁଯୋଗେ ଦେବରାଜ ଇନ୍ଦ୍ର—
ନେବାପାଇଁ ପ୍ରତିଶୋଧ ଯାହାକଲେ ଶୁଣ ଏବେ ବତ୍ସ ।
(ସର୍ବେ ପ୍ରସ୍ଥାନ)

---

## ସପ୍ତମ ଦୃଶ୍ୟ

( ସ୍ଥାନ—ଉପବନ । ଆନମନା ଭାବେ ଅହଲ୍ୟାଙ୍କର ପ୍ରବେଶ । )

ଅହଲ୍ୟା— ବିତିଯାଏ ବର୍ଷ ମାସ ଦିନ ।
ଋତୁ ପରେ ଋତୁ ଆସି ଧରାପରେ କରଇ ରାଜୁତି ।
ବର୍ଷା ପରେ ଆସେ ଶୀତ ତା'ପରେ ଗ୍ରୀଷମ ।
ଜଳିଯାଏ ବୃକ୍ଷେ ପତ୍ରରାଜି ।
ଦୁଃଖ ପରେ ସୁଖ ଆଉ ସୁଖ ପରେ ଦୁଃଖ
ଆସେ ସୃଷ୍ଟି ପରେ ନିରନ୍ତର ।
କିନ୍ତୁ ମୋ ମନ କାନନେ, ରାଜୁତି କରଇ ଗ୍ରୀଷ୍ମ ସଦା ସର୍ବଦା ।
ମହର୍ଷି ଗୌତମ ବିନା ଭୁଞ୍ଜ ଏ ଜୀବନ ।

ସଖୀ—(ପ୍ରବେଶି) ସଖି ! ଏ କି ବିପର୍ଯ୍ୟସ୍ତ ରୂପ ?
ମନେ ତବ ନାହିଁ ସରସତା ?

ଅହଲ୍ୟା—ସଖି ! (କାନ୍ଦିବା)

—ଗୀତ—

ଗୃହିଁ ଗୃହିଁ ପଥ ମୋର ନ ସରେ ଦିନ
ନ ଆସିଲେ ତପୋନିଷ୍ଠ ପରାଣ ଧନ । (ପଦ)
ବିତିଯାଏ ବର୍ଷ ମାସ ସଖୀ ମୋ ଉଡ଼େ ସାହସ
କାନ୍ତ ବିନା ଲୁଚ୍ଛ ସିନା ମୋର ଜୀବନ । ୧ ।
ଏ ଆଶ୍ରମ ପରିବେଶ ଲାଗଇ ବିଷ ସଦୃଶ
ପ୍ରାଣପ୍ରିୟ ବିନା ମନ ନ ଖୋଜେ ଆନ । ୨ ।
ହେ ଜଳଦ ଢେଉ ଅଳି ସହ୍ନି ପନ୍ତ ଯାଅ ଚଳି
କହ ତାଙ୍କ ବିନା ଯେତେ ଭୋଗେ କଷଣ । ୩ ।
କହିବ ପନ୍ତରେ ମୋର ମିଳିବେ ଆସି ସତ୍ୱର
ଗୋବନ୍ଦ କହ ନୋହିଲେ ତେଜିବି ପ୍ରାଣ । ୪ ।

ସଖୀ—ସଖି ! କଣ୍ଡ ନିଷ୍ଠୁର ଅଟନ୍ତି ମହର୍ଷି ଗୌତମ ।
ଗୃହେ ରଖି ଯୁବାନାରୀ ଗଲେ ତପ ଜନ୍ଧି ।
କପରି ପୁରୁଷ ସେହୁ
ଛାଡି ପାରିଲେ ମୁ ଲୁଚ୍ଛି ଏ ରୂପ ମାଧୁର୍ଯ୍ୟ ?
ଆହା କପରି ହଟିବ କାଳ ହୋଇ ଏକାକିନୀ ?

ଅହଲ୍ୟା—ସଖି ! ବଧିସୁତା ଅହଲ୍ୟା ମୁଁ —ମହାମୁନି ଗୌତମ ଘରଣୀ
ଯାଇଛନ୍ତି ତପ ଅର୍ଥେ ମୁନି ।
ମୁହିଁ ଅର୍ଦ୍ଧାଙ୍ଗିନୀ ତାଙ୍କ—
ତାଙ୍କ ପାଇଁ ଆଚରିବି କଠୋର ତପସ୍ୟା ।
ଏହି ତ ଆନନ୍ଦ ମୋର ।
ଜ୍ୱଳମାନ ଦୀପଶିଖା ସମ
ଜଳି ଜଳି ଲଭିବାରେ ରହିଛି ଆନନ୍ଦ ।
ସ୍ୱାମୀଙ୍କର ଇଚ୍ଛା ଅଟେ ମୋର ପାଳନୀୟ ।

ସଖୀ—କିନ୍ତୁ ସଖି ! ବିଧାତା ନନ୍ଦନୀ ତୁମ୍ଭେ
ଇଚ୍ଛିଥିଲେ ପାଇଥାନ୍ତ ପତିରୂପେ ଦେବରାଜ ଇନ୍ଦ୍ରେ—

ଅଧିକାଂଶ ସ୍ୱର୍ଗ ସିଂହାସନେ ।
ତେଜ୍ୟାକର ତାହା—ଶ୍ରେଷ୍ଠ କଷଣ ସିନା ଏହି ତପୋଭୂମେ ?
ଅହଲ୍ୟା—(ହସି) ଦେବରାଜ ଇନ୍ଦ୍ର—ଅଧିକାଂଶ ସ୍ୱର୍ଗ ସିଂହାସନେ ?
କହ ସଖୀ, ମୋର ସ୍ୱାମୀ ଅଙ୍କଠାରୁ
କିବା ଅଟେ ଉଚ୍ଚତର ଦେବରାଜ ସ୍ୱର୍ଗ ସିଂହାସନ ?
ସଖୀ—ଅଧିକାରେ ଅଛି ତାଙ୍କ ନନ୍ଦନ କାନନ ।
ଯହିଁ ସଦା ବହୁଥାଏ ମଳୟ ବସନ୍ତ ।
ଅପସରତାର କ୍ଷୁଦ୍ର କ୍ଷୁଦ୍ର ଗନ୍ଧେ—ହୁଏ ଚତୁର୍ଦ୍ଦିଗ ।
ଅହଲ୍ୟା—ଏ ଉପବନର ଶୋଭା ନ୍ୟୂନ କିବା ନନ୍ଦନ କାନନୁ ?
ଚନ୍ଦନ ବୃକ୍ଷର ସୁମଧୁର ଗନ୍ଧ ଚତୁର୍ଦ୍ଦିଗ କରେ ସୁଗନ୍ଧିତ ।
ନାନାଜାତି ପୁଷ୍ପ ଗନ୍ଧେ ତନୁ ମନ ହୁଏ ପୁଲକିତ
କହ ସଖୀ, ଏହା କିବା ପ୍ରାପ୍ତ ଦେବଲୋକେ ?
କୋକିଳର କୁହୁତାନ ପକ୍ଷୀର କୂଜନ
କୁରଙ୍ଗ କୁରଙ୍ଗୀ କ୍ରୀଡ଼ା ସମ୍ଭବ କି ନନ୍ଦନ କାନନେ ?
ସଖୀ—ଅତୁଳନୀୟ ସମ୍ପଦ ସମ୍ଭବ ସ୍ୱର୍ଗରେ ।
ଅହଲ୍ୟା—ଦେଖନ୍ତୁ ଦେଖନ୍ତୁ ସଖୀ ! କୁରଙ୍ଗ ଦମ୍ପତି ?
ସଖୀ—ଫଳପ୍ରରେ ଅଙ୍ଗେ ଅଙ୍ଗେ ଭେଟ
ଜଣାଯାଏ କରନ୍ତିକି ଭାଷା ହଜନମୟ ଲକ୍ଷଣେ ମଧ୍ୟେ ।
ଅହଲ୍ୟା—ଆଉ ଏଣେ ଦେଖ ସଖୀ ।
ସଖୀ— ବୃକ୍ଷ ଶାଖାପରେ ଦୁଇ କପୋତ କପୋତୀ
କେଉଁ ଏକ ଅଜଣା ଭାଷାରେ
କରୁଛନ୍ତି ପରସ୍ପରେ ପ୍ରେମ ବିନିମୟ ।
ଅହଲ୍ୟା—କହ ସଖି ! ଏ ସମ୍ପଦ ନୁହେଁ କିବା ସ୍ୱର୍ଗଠାରୁ ବଳି ?
ସ୍ୱର୍ଗପୁରରେ କିବା ସମ୍ଭବ ଏ ସାଜ ?
ସଖୀ—ତଥାପି ସେ ସ୍ୱର୍ଗଧାମ ଶ୍ରେଷ୍ଠ ତିନିଲୋକେ ।
ଯାହା ପାଇଁ ତେଜ୍ୟା କରି ସଂସାରର ସକଳ ସମ୍ପଦ;
ଆଚରନ୍ତି ତପ ଯାଇ ଗହନ କାନନେ—
କେତେ କେତେ ଯକ୍ଷ ରକ୍ଷ ମାନବ କିନ୍ନର ।

ଅହଲ୍ୟା—(ହସି) ଓଃ ଦେଖୁଛି ମୁଁ ସଖୀ !
ପ୍ରଲୁବ୍ଧ ହୋଇଛ ତୁମ୍ଭେ ସ୍ୱର୍ଗ ସମ୍ପଦରେ ।
ଶ୍ରବଣ କରିଛ ବୋଧେ ଇନ୍ଦ୍ରଙ୍କ ନିକଟୁ ।

ସଖୀ—ହଁ ସଖି ! କଏ ନୁହେଁ ସମ୍ପଦେ ପ୍ରୟାସୀ ?

ଅହଲ୍ୟା—ତା' ହେଲେ ସଖି ! କହିବି ମୁଁ ଇନ୍ଦ୍ରେ, ନେଇ ସେ ତୁମ୍ଭଙ୍କୁ
ଦେଖାଇ ଆଣିବେ ବେଗେ ସେହି ସ୍ୱର୍ଗଧାମ ।

ସଖୀ—ଆଜ ତୁମ୍ଭେ ମଧ୍ୟ ଯିବ ସଖି; ମୋ ସାଥିରେ ସେହି ସ୍ୱର୍ଗପୁରୀ ।

ଅହଲ୍ୟା—(ହସି) ମୁଁ ? ମୋପାଇଁ ତ ସ୍ୱର୍ଗ ଅଟେ ଏ ଆଶ୍ରମ ସ୍ଥଳୀ ।

ସଖୀ—କିନ୍ତୁ······

ଅହଲ୍ୟା—କିନ୍ତୁର ତ ପ୍ରଶ୍ନ ନାହିଁ ଏଥି ?

ସଖୀ—ହେଲେ ସଖି ! ସ୍ୱର୍ଗ-ସ୍ୱର୍ଗ ।
ସ୍ୱର୍ଗସମ ସମକକ୍ଷ ହେବ କି ପୃଥିବୀ ?

—ଗୀତ—

ସରଗ ସମ ପୃଥ୍ୱୀ ହେବକି ଗୋ
ସୁନା ମୂଲ ପିତଳ ଦେବ କି ଗୋ । (ପଦ)

କାହିଁ ଇନ୍ଦ୍ର ସମ୍ପଦ — କାରଣ ଐରାବତ
ନନ୍ଦନ ବନଜାତ — କୁସୁମ ପାରିଜାତ
ଦେବସଭା ସରିକେ ହେବ କି ଗୋ । (୧)

ବିଧି କେଶବ ଶିବ — ମେଳ ସକଳ ଦେବ
ଗନ୍ଧର୍ବ ବାଦ୍ୟ ତାଳ — ଅପ୍‌ସରା ନୃତ୍ୟ ଖେଳ
ମର୍ତ୍ତ୍ୟେ ସେ ଶୋଭା କାହିଁ ଥିବ କି ଗୋ । (୨)

ଦେଖ ମର୍ତ୍ତ୍ୟ ବନାନୀ — ସିଂହ ଶାର୍ଦ୍ଦୂଳ ଧ୍ୱନି
ଯା' ଶ୍ରବଣେ ଶରୀର — କମ୍ପଇ ଥରହର
ଜରା ବ୍ୟାଧିକୁ ତେଜି ଯିବ କି ଗୋ । (୩)

ତୁମ୍ଭେ ବିଧି ନନ୍ଦିନୀ — କମା ମର୍ତ୍ତ୍ୟ ଦୁଃଖିନୀ
କହେ ଦ୍ୱିଜ ଗୋବିନ୍ଦ — ଭୁଞ୍ଜ ସ୍ୱର୍ଗ ସମ୍ପଦ
ହୋଇ ଦେବତା ପଦ ସେବକା ଗୋ । (୪)

ଅହଲ୍ୟା—(ହସିଉଠିଛନ୍ତି)

ସଖୀ—ହଁ ସଖୀ, ଦେବରାଜ ଇନ୍ଦ୍ର ସୁଦାନ୍ତ,
    ତୁମ୍ଭର ସାହାଯ୍ୟ ସର୍ବାନ୍ତ କରଣେ ।
ଅହଲ୍ୟା—କ କହୁଛ ସଖୀ ତୁମ୍ଭେ ?
ସଖୀ—କହୁଅଛୁ ସତ୍ୟ ସଖୀ । ଇଚ୍ଛନ୍ତ ସେ ତୁମ୍ଭ ଅଙ୍ଗ ସଙ୍ଗ ।
    ତେଣୁ ତାରେ ପ୍ରୀତିଦାନ ଧନ୍ୟକର ......
ଅହଲ୍ୟା—ପ୍ରେମଶିକା !

—ଗୀତ—

(ଧିକ ଭଗବାନ-ବୃତ୍ତ)

ଧିକ ଧିକ ପ୍ରେମଶିକେ          ମୁଖେ ଲାଜ ନାହିଁ ତିକେ
    ମାତୃ ଜାତିରେ କଳଙ୍କ ଲଗାଇଲୁ ତୁ ଶପୂଳେ । (ପଦ)
ହୋଇ ଆଶ୍ରମ ବାସିନୀ          ହେଲୁ ତୁ ଏଡ଼େ ଅଜ୍ଞାନୀ
    ମଧୁ ଭାଣ୍ଡରେ ଭରିଲୁ ବିଷ ତୁଚ୍ଛ ଅବହେଳେ । (୧)
ପତି ମୋ ତପୀପ୍ରବର          ଦେବେ ବନ୍ଦନ୍ତ ଯାପୂର
    ତାଙ୍କ ନାରୀ ଅଟେ ମୁହିଁ ନ ଭାବିଲୁ ମନେ ତିଳେ । (୨)
ପତି ମୋ ଅଗତି ଗତି          ଗୁରୁବ୍ରହ୍ମା ସେ ଅଟନ୍ତି
    ତାଙ୍କ ସେବା ବିନା ଆନ ନଜାଣେ ମୁଁ ମସ୍ତିତଳେ । (୩)
ଗୋବନ୍ଦ ଭିନ୍ନ ପାପିଷ୍ଠା          ଅମୃତେ ଭରିଲୁ ବିଷ୍ଠା
    ଯାଅ ବେଗେ ଅପସରି ନ ଆସିବୁ ଆଉ ବେଳେ । (୪)
ଧିକ ଧିକ ତୋର ନାରୀ ଜନ୍ମ ।
ହୋଇ ମୋର ଅନ୍ତରଙ୍ଗ ସଖୀ,
ପ୍ରବର୍ତ୍ତାଉଛୁ ତୁ ମୋତେ ପାପ କାର୍ଯ୍ୟ ପାଇଁ ?
ନାରୀ ହୋଇ ଜାତି ମୁଖେ ଦେ ଲୁଚୁ କାଳିମା ?
ଦୂର ହୁଅ ଏ ସ୍ଥାନରୁ ନ ରହିଣ ଦଣ୍ଡେ ।
ନ ପାରିବି ବିଲୋକି ମୁଁ ତୋର ପାପ ମୁଖ । ଯାଅ –
ଦେବରାଜ ଇନ୍ଦ୍ର !                    (ସଖୀ ପ୍ରସ୍ଥାନ)
ହୋଇ ଅନ୍ତେବାସୀ, ହୋଇ ଦେବତାଙ୍କ ଶିରୋମଣି
ମିଛ ଆଶା ବଳାଇଲୁ ଗୁରୁପତ୍ନୀ ପ୍ରତି ?
ନାଁ । ନାହିଁ ତୋର ସ୍ଥାନ ଏ ଆଶ୍ରମେ ।
ଆଜ ତୋତେ ବିତାଡ଼ିତ କରିବି ଆଶ୍ରମୁ ।          (ପ୍ରସ୍ଥାନ)

# ପ୍ରଥମ ଦୃଶ୍ୟ

( ଉପବନ । ଉଦ୍ଦାଳକ ସହ ଇନ୍ଦ୍ରଙ୍କର ପ୍ରବେଶ )

ଉଦ୍ଦାଳକ—ଦେବରାଜ ଇନ୍ଦ୍ର ! ନ ପଡ଼େ କି ମନେ ଥରେ ତବ ସ୍ୱର୍ଗଧାମ ?
ସର୍ବୋପରି ଶଚୀଦେବୀ, କୁମାର ଜୟନ୍ତ,
ଗନ୍ଧର୍ବଙ୍କ ବାଦ୍ୟତାଳେ ଅପ୍‌ସରାଙ୍କ ନୃତ୍ୟ ?

ଇନ୍ଦ୍ର—ପ୍ରଲୁବ୍‌ଧ କରିଛି ଧରା—ଏ ବନାନୀ ଶୋଭା ।
କୁଞ୍ଜ କୁଞ୍ଜ ନନ୍ଦନ ପୂଣ୍ୟତୋୟା ସ୍ୱଚ୍ଛ ନିର୍ଝରଣୀ,
ପକ୍ଷୀର କୂଜନ ସାଥେ କୋକିଳ ସଙ୍ଗୀତ,
ଆଶ୍ରମର ଶାନ୍ତମୟ ତୁମର ସାନ୍ନିଧ୍ୟ ।
ସର୍ବୋପରି ଅପରୂପା ଅନିନ୍ଦ୍ୟ-ସୁନ୍ଦରୀ—
ସିଂହକଟୀ ପୀନସ୍ତନା —
ଗୁରୁପତ୍ନୀ ଅହଲ୍ୟା ମୋ ସଦା ଜପାମାଳା ।

ଉଦ୍ଦାଳକ—ଏ କି କୁହ ମତିମାନ ଦେବରାଜ ଇନ୍ଦ୍ର ?
ଗୁରୁପତ୍ନୀ ଜନନୀର ସମ ।
ତାଙ୍କ ପ୍ରତି ମାତ ବାକ୍ୟ ନୁହେଁ ଶୋଭନୀୟ ।

ଇନ୍ଦ୍ର—ଉଦ୍ଦାଳକ ! ପ୍ରିୟ ସଖା ତୁମ୍ଭେ ।
ତୁମ୍ଭ ପାଶେ କିବା ମୋ ଅକଥ୍ୟ ?

—ଗୀତ—

( ସେପଟର ମାୟାଗୁଣ୍ଡ—ବୃତ୍ତେ )

ଅହଲ୍ୟା ରମ୍ଭାବରନା    ନବନା କୁନ୍ଦ ଦଶନା
ପୀନସ୍ତନା ଚନ୍ଦ୍ରାନନା    ମୋ ପିଣ୍ଡ କାରଣ ସିନା । (ପଦ)
ମୀନ ନୟନା ଅପାଙ୍ଗ    ଢାଳିଲେ ଦେହେ ଅନଙ୍ଗ
କଳକଣ୍ଠୀ କୋମଳାଙ୍ଗୀ    ଅଙ୍ଗ ସଙ୍ଗ ମୋ କାମନା ।୧।
ବାରଣଗମନା ମୋତେ    ବାରଣ ନ କର ସତେ
ବରଣ କରିବ ଚିତ୍ତେ    କାରଣ ସେ ମୋର ସିନା ।୨।

ହର-କଣ୍ଠୀ ରମ୍ଭାଚରୁ ସଦୃଶ ସୁନ୍ଦର ଉରୁ
କଟୀ କଙ୍କିଣୀ ବାଜେଣୀ ଦମ୍ଭ ଭଙ୍ଗି କରେ ଚୂନା ।୩।
ଛଇଳା ନବୀନା ଯୁବ୍ତୀ କାମେ ଜର ଜର ଦେହୀ
ଗୋବନ୍ଦ କହନ୍ତି ପବଣ ଚେତକବ ତା ପ୍ରୀତି ବନା ।୪।

ଉଦ୍ଧାଳକ—ଅହା ! ତୁମ୍ଭ ଦୁଃଖେ ମର୍ମାହତ ମୁହିଁ ।
ଅଚ୍ଛା ଦେବରାଜ ! ଜାଗେ ଏକ ପ୍ରଶ୍ନ ମନେ ।
କରିବ କ ସମାଧାନ ତା'ର ?

ଇନ୍ଦ୍ର—ପ୍ରକାଶ କର ସଖା ।

ଉଦ୍ଧାଳକ—ଯଦି କହୁଁ...

ଇନ୍ଦ୍ର—ନାଁ—ନାଁ, ନିର୍ଭୟରେ ବ୍ୟକ୍ତ କର ସଖା ।

ଉଦ୍ଧାଳକ—ଦେବରାଜ ! ନ ଦେଖିଛୁ କେବେ ମୁହିଁ ତୁମ୍ଭ ସ୍ୱର୍ଗରାଜ୍ୟ ।
ସେ ନିମନ୍ତେ ନ ଜାଣେ ମୁଁ ସ୍ୱର୍ଗର ବିଧାନ ।

ଇନ୍ଦ୍ର—(ହସି) ଜାଣିବାକୁ ଚାହ ତୁମ୍ଭେ ସ୍ୱର୍ଗର ବିଧାନ ?
ତେବେ ପଚ୍ଛାକର କି ବିଧାନ ଜାଣିବାରେ କଳଛି ମାନସ ?

ଉଦ୍ଧାଳକ—ଆଚ୍ଛା ଦେବରାଜ ! ସ୍ୱର୍ଗରାଜ୍ୟେ ଅଛି କିବା
ମାତା-ପୁତ୍ର, ଭ୍ରାତା-ଭଗ୍ନୀ ପବିତ୍ର ସମ୍ପର୍କ ?

—ଗୀତ—

ଶଚୀପତି ହେ, କେବେଗେ କୁହ ବୁଝାଇ
ତୁମ୍ଭ ସ୍ୱର୍ଗେ ମାତା-ପୁତ୍ର ଭାଇ-ଭଗ୍ନୀ ପବିତ୍ର ସମ୍ପର୍କ ଅଛି କି ନାହିଁ । (ପଦ)
ଦେଖିନି ମୁଁ ସରଗ କେବେ ପଚାରିଲି ସେହି କାରଣେ
ପିତାମାତା ଭଳି ଗୁରୁ ଗୁରୁ-ପତ୍ନୀ କୁହ ପୂଜା ପାଉଥାନ୍ତି କି ନାହିଁ ।୧।

ଇନ୍ଦ୍ର—"ଗୁରୁ ବ୍ରହ୍ମା, ଗୁରୁ ବିଷ୍ଣୁ, ଗୁରୁଦେବ ମହେଶ୍ୱର ।
ଗୁରୁ ସାକ୍ଷାତ ପରଂବ୍ରହ୍ମ ତସ୍ମୈ ଶ୍ରୀଗୁରବେ ନମଃ ।"
ଗୁରୁଙ୍କ ଆସନ ସଦା ଶ୍ରେଷ୍ଠ ତିନଲୋକେ ।

ଉଦ୍ଧାଳକ—ଆଚ୍ଛା ?

—ଗୀତ—

ଅହଲ୍ୟା ଗଉତମ ନାରୀ ଗୁରୁପତ୍ନୀ ସେ ଯେ ତୁମ୍ଭର
ସ୍ୱଭାବେ ସେ ମାତ ତୁମ୍ଭେ ତାଙ୍କ ସୁତ ମାତା-ପୁତ୍ର ପ୍ରୀତି ଅଛି କି ନାହିଁ ? ।୨।

ଇନ୍ଦ୍ର—ନାଁ—ନାଁ । କିନ୍ତୁ···

ଉଦ୍ଧାଳକ—(ଗୀତ) କୁହ ନାହିଁ ଆଉ ସେକଥା
ମିଛେ ବୋଲାଉଛ ଦେବତା
ବୋଲଇ ଗୋବନ୍ଦ ଅଟ ବଡ଼ ମନ୍ଦ
ଅଲଜୁକ ମୁଂଖେ ସରମ ନାହିଁ ? ।୩।

ଇନ୍ଦ୍ର—ଉଦ୍ଧାଳକ !

ଉଦ୍ଧାଳକ—ଶଚୀପତି ! ହୋଇ ତୁମ୍ଭେ ଦେବରାଜ ନାକ ଅଧୀଶ୍ବର,
କର ଯଦି ହୀନ ଆଚରଣ—
କି ଶିକ୍ଷା ଲଭିବେ ଏଥୁ ମର୍ତ୍ତ୍ୟବାସୀଗଣ
ଆଉ କି ନମନ୍ତ୍ରେ ପଦେ ଢାଳି, ପାଦ୍ୟ ଅର୍ଘ୍ୟ ଅନ୍ତର ଚେତନା—
ପୂଜିବେ ମାନବେ ତୁମ୍ଭ ଦେବତା ସମାଜ ?

ଇନ୍ଦ୍ର—ଉଦ୍ଧାଳକ ! ଜାଣ ତୁମ୍ଭେ ଦେବରାଜ ମୁହିଁ
ଶ୍ରେଷ୍ଠ ଅଟେ ଦେବ ସମାଜର ?
ସୁନ୍ଦରୀ ଅହଲ୍ୟା ଅଟେ ବ୍ରହ୍ମାଙ୍କ ନନ୍ଦନୀ ।
ସାମାନ୍ୟ ମାନବ ଏକ ଯୋଗ୍ୟ କିବା ପତି ହେବେ ତା'ର ?
ସ୍ୱର୍ଗରେ ସେ ଶ୍ରେୟା ସିନା ଅଟେ ଦେବତାର ।

ଉଦ୍ଧାଳକ—ବାଃ ଚମତ୍କାର ଯୁକ୍ତି ତବ ଅଟେ ଦେବରାଜ ।
ଯେତେବେଳେ ପିତାମହ ସମର୍ପିଲେ
ତ୍ରିଲୋକ-ଶ୍ରେଷ୍ଠ-ସୁନ୍ଦରୀ ବନସ୍ପତି ଭିକ୍ଷାଣୀ ଗୌତମେ —
ସେ ସମୟେ କାହିଁଥିଲ ତୁମ୍ଭେ ଦେବଶ୍ରେଷ୍ଠ ?
ନେଇ ତ ପାରିଥାଆନ୍ତ ଅହଲ୍ୟାଙ୍କ ପାଣି
ପିତାମହ ବ୍ରହ୍ମାଙ୍କ ନିକଟୁ ?
ଆଉ ଏବେ କୁହ ଗୌତମ ମୁନି ଅଟନ୍ତି ସାମାନ୍ୟ ମାନବ ?

ଇନ୍ଦ୍ର—ଉଦ୍ଧାଳକ ।

ଉଦ୍ଧାଳକ—ସାମାନ୍ୟ ମାନବ ଯଦି ମହର୍ଷି ଗୌତମ,
କୁହ ତେବେ ଶଚୀନାଥ-ସୁରପତି-ସ୍ୱର୍ଗ ଅଧୀଶ୍ବର
କମ୍ପାଇ ଆସିଛ ତୁମ୍ଭେ
ସ୍ୱର୍ଗଲୋକ ମର୍ତ୍ତ୍ୟପୁରର ସେ ମାନବ ପାଶେ ?
ଯାଅ ଶଚୀପତି; ନ କହିବ ପୁନରପି ଏମନ୍ତ ବଚନ—
ହେବେ ସାବଧାନ । (ପ୍ରସ୍ଥାନ)

ଇନ୍ଦ୍ର—(ଅଟ୍ଟହାସ୍ୟ) ସାମାନ୍ୟ ମାନବ ପୁଣି ଅଟେ ବନବାସୀ;
ସେ ପୁଣି ଶୁଣାଉଅଛୁ ମୋତେ ଚେତାବନୀ ?

ସଖୀ—(ସାତବସ୍ତ୍ର ଘରେ ପ୍ରବେଶି) ଦେବରାଜ !

ଇନ୍ଦ୍ର—ସଖୀ ପ୍ରେମଶୀଳେ ! କୁହ ସଖୀ,
ନିର୍ବିଘ୍ନରେ କାର୍ଯ୍ୟ କଣା ହୋଇଛୁ ସମ୍ପନ୍ନ ?

ସଖୀ—ନାଁ ଦେବରାଜ ।

ଇନ୍ଦ୍ର ନାଁ ? ସଖି !

ସଖୀ—ନାନା ଛଳେ ବ୍ୟକ୍ତ କଲି ତୁମ୍ଭର ବାସନା ।
ଶୁଣି ତାହା ସୁଦକ୍ଷ ଅହଲ୍ୟା—ଫଣୀସମ କଲେ ଫୁ ଫୁ କାର ।
ଭୟ ପାଇ ଆସିଲି ପଳାଇ ।
ହୁଏ ଅନୁମାନ -ଆସୁଛନ୍ତି ଏଇକ୍ଷଣେ ତୁମର ସମ୍ମୁଖେ ।
ସାବଧାନ ହେବାପାଇଁ ଦେଲି ମୁଁ ସମ୍ବାଦ
ଯାଉଛି ମୁଁ ଏବେ ଅନ୍ତରାଳେ । (ପ୍ରସ୍ଥାନ)

ଇନ୍ଦ୍ର— ଆଶ୍ଚର୍ଯ୍ୟ ! ସାମାନ୍ୟ ନାରୀ ହୋଇ ଏତେକ ଆସ୍ପର୍ଦ୍ଧା ?
ଦୁର୍ବଳା ଅବଳା ହୋଇ ନ କରିଲା କର୍ଣ୍ଣପାତ
ଦେବରାଜ ଇନ୍ଦ୍ରର ପ୍ରସ୍ତାବେ ?

ଅହଲ୍ୟା—(ଝଡ଼ବେଗେ ପ୍ରବେଶି) ଦୁର୍ବଳା ଅବଳା ନୁହେଁ ଗୌତମ ରମଣୀ ।
ପଦାଘାତ କରେ ସେହୁ ପ୍ରସ୍ତାବେ ତୁମ୍ଭର ।

ଇନ୍ଦ୍ର—ନୁହଁଇ ବ୍ୟଥିତ ଇନ୍ଦ୍ର ତବ ପଦାଘାତେ ।
ଆସିଛି ସମ୍ମୁଖେ ତୁମ୍ଭେ ଏ ନିର୍ଜନ ଲଗ୍ନେ ।
କହୁଅଛୁ ପୁନରପି ଚନ୍ଦ୍ରାନନ ଦାରେ
ଦେବ ଦେବ ଇନ୍ଦ୍ର ଆଜ ତବ ପ୍ରେମ ପ୍ରାର୍ଥୀ ।

ଅହଲ୍ୟା—ଆଖଣ୍ଡଳ !

ଇନ୍ଦ୍ର—ଭଜିଲେ ଏ ଆଖଣ୍ଡଳ ଦୂରହେବ ଦାରିଦ୍ର୍ୟ ତୁମ୍ଭର
ସାନନ୍ଦେ ବସିବ ଅଙ୍କେ ସ୍ୱର୍ଗ ସିଂହାସନେ ।

ଅହଲ୍ୟା—ଲଜ୍ଜା ନାହିଁ ମୁଖେ ତବ ଦେବରାଜ ଇନ୍ଦ୍ର ?
ମୁହିଁ ତବ ଗୁରୁପତ୍ନୀ—ଜନନୀ ସଦୃଶ ।

ନ ଶୁଣଣ ଭାକେମାଷ
ମୋ ସାଥିରେ ଶୀରଛରେ ବଳାଇଛୁ ଆଶ ?
ଧିକ ଧିକ ଇନ୍ଦ୍ରପଦ ଧିକ ତୋ ଇନ୍ଦ୍ରଭ୍ୱ ।

—ଗୀତ—

ଧିକ ଧିକ ଧିକ ବାସବ ଧିକ ତବ ମାତା ଧିକ ପିଅର । (ପଦ)
ଧିକ ତବ ମଘବାସନ ଧିକ କରୁ ବଜ୍ରଧାରଣ
ଶତଧିକ ତବ ପଞ୍ଚରୂଷପଣ ଧିକ ପାପବାଣୀ ଧରୁ ମୁଖର ।୧।
ତ୍ରିଭୁବନ ବାସୀ ତୁମ୍ଭେ ଦେବତା ଶ୍ରେଷ୍ଠ କୁଳେ କାଳ ହେଲୁ ପାପିଷ୍ଠ
ଲଭି ଉଚ୍ଚ ଜନ୍ମ କଲୁ ନୀଚ କର୍ମ କପଟ ଧରଣୀ ସହୁଛି ଭର ।୨।
ଗୁରୁନାଶ ମାତା ତୁମ୍ଭର ପ୍ରୀତି ଇଚ୍ଛୁ ସାଥେ ତାହାର
ଗୋବନ୍ଦ କହଇ ଏ ସ୍ଥାନେ
ନ ରହ ଆଶ୍ରମରୁ ଦୁଷ୍ଟ ବେଗେ ବାହାର ।୩।
ଯାଅ ଇନ୍ଦ୍ର ଛେକ ଏ ଆଶ୍ରମ
ମୁଖ ତବ ଦେଖି ନ ଯୋଗାଇ ।
ହୋଇ ତୁମ୍ଭେ ଦେବତା ସମ୍ରାଟ—
ନୀଚଲୋକର ସଦୃଶ କଲ ବ୍ୟବହାର ।
ତୁମ୍ଭ ପାଇଁ ନାହିଁ ସ୍ଥାନ ଏ ଆଶ୍ରମ ଆଜ ।

ଇନ୍ଦ୍ର—ହଁ ଯାଉଛି ଅହଲ୍ୟା; କିନ୍ତୁ ମନେରଖ—
ଅଚିରେ ଏ ଗର୍ବ ଦମ୍ଭ ହେବ ତୁମ୍ଭ ଝର୍ବ ।

ଅହଲ୍ୟା—ହୀନ ! ନୀଚ !! ଅଚିରେ ମୋ ଗର୍ବ ହେବ ଖର୍ବ ?
କାହାର ଆସ୍ପର୍ଦ୍ଧା ଅଛି ଏ ତ୍ରିଲୋକ ମଧ୍ୟେ···
ଗର୍ବ ମମ କରିବ ଖଣ୍ଡନ ?
ମୁହିଁ ଅଟେ ମୁନିଶ୍ରେଷ୍ଠ ଗଉତମ ନାରୀ ।
ଭୟ କାହେର ନାହିଁ ମୋର ମୁନିଙ୍କ ପ୍ରସାଦେ
ଆଜ ତୁମ୍ଭେ ସ୍ୱର ଲମ୍ପଟ ଦେବତା—ଦେଖାଉଛ ଭୟ ମୋତେ ?
ହଁ ଯାଉଛି ମୁଁ ଇନ୍ଦ୍ର !
ସ୍ମରଣ ରହେ ଯେପରି—ସ୍ଥାନ ତୁମ୍ଭ ନାହିଁ ଏ ଆଶ୍ରମେ । (ପ୍ରସ୍ଥାନ)

ଇନ୍ଦ୍ର—ଗର୍ବିଣୀ ଅହଲ୍ୟା ! ଏତେ ତୋର ଗର୍ବ ?
ଛଳେ ବଳେ କୌଶଳେ କରିବି ହରଣ ତୋତେ ।
ଦେଖିବି ମୁଁ କେ କରିବ ରକ୍ଷା ତୋତେ ଦେବରାଜ କରୁ ।
( ଅଟ୍ଟହାସ୍ୟ ସହ ପ୍ରସ୍ଥାନ )

# ନବମ ଦୃଶ୍ୟ

( ତାସକାଠିଆ ଗାୟକ ଓ ପାଳିଆଙ୍କର ପ୍ରବେଶ )

ଗାୟକ—ସାଙ୍ଗ !

ପାଳିଆ—କୁହ ସାଙ୍ଗ ।

ଗାୟକ—ଦେବରାଜ ଇନ୍ଦ୍ର ଅପମାନ ପାଇ ସ୍ୱର୍ଗକୁ ଫେରିଗଲେ ।
ଅହଲ୍ୟା ଏକାକିନୀ ହୋଇ ଆଶ୍ରମରେ ରହିଲେ ।
ମହାମନା ଗୌତମ ତ ତପରତ ।

ପାଳିଆ—ହିଁ ତା'ପରେ ?

ଗାୟକ—ତା'ପରେ ? ସ୍ୱର୍ଗପୁରେ ଦେବରାଜ କ୍ରୋଧେ ଜରଜର ।
ପ୍ରତିଶୋଧ ନେବା ପାଇଁ ମନେ କଲେ ସ୍ଥିର । ୧ ।
ସହଜେ ଅହଲ୍ୟାଙ୍କର ରୂପେ ବଶ ହୋଇ
ତାଙ୍କ ଅଙ୍ଗ-ସଙ୍ଗ-ସୁଖ ଇଚ୍ଛୁଥିଲେ ସେହି । ୨ ।
ମୁନି ଗଉତମ ତପସ୍ୟାରେ ରତ ଥିଲେ
ସେ ସୁଯୋଗ ନେବାପାଇଁ ଇନ୍ଦ୍ର ଚିନ୍ତା କଲେ । ୩ ।
ମାୟା ରଚି ଗଉତମ-ମୁନି ରୂପ ଧରି
ମିଳିଲେ ଆଶ୍ରମେ ଯହିଁ ଅହଲ୍ୟା ସୁନ୍ଦରୀ । ୪ ।
ମଘବା ମାୟା ଅହଲ୍ୟା ଜାଣି ନ ପାରିଲେ
ପତି ଭାବି ପାଦ୍ୟ ଅର୍ଘ୍ୟ ଦେଇ ସମ୍ଭାଷିଲେ । ୫ ।
ରହିଲେ ଅହଲ୍ୟା ପୁରେ ମାୟା ଗଉତମ
ତା'ପରେ ଯା'ହେଲା ଦେଖନ୍ତୁ ଗୁଣିକ ସୁଜନ । ୬ ।
ଦୋଷାଦୋଷ ନ ଧରିବ ଏତିକ ମିନତି
ଶ୍ରୀ ଶାରଳା ପଦେ କରେ ଗୋବିନ୍ଦ ମିନତି । ୭ ।

( ଉଭୟଙ୍କର ପ୍ରସ୍ଥାନ )

# ଦଶମ ଦୃଶ୍ୟ

(ଗୌତମ ଆଶ୍ରମ । ଏକାକୀ ଆନମନା ଭାବେ ଅହଲ୍ୟାଙ୍କର ପ୍ରବେଶ)

ଅହଲ୍ୟା — ପାର୍ଶ୍ୱବନ ଦେବ ପତିମୋର ଗଲେ ତପ ଅର୍ଥେ ।
ଏକାକୀ ରହିଛି କୁଟୀରେ ।
ଦିନ ନ ସରଇ ମୋର ଲାଗେ ଯୁଗସମ ।
ପ୍ରାଣନାଥ ବିନା ପ୍ରାଣ କରେ ହାହାକାର ।
ଜୀବନଟା ଲାଗେ ମୋ ଅସହ୍ୟ ।
କିପରି କାଟିବି କାଳ ?
ଏଁ ! ଏ କ'ଣ ? ଅକସ୍ମାତେ ସ୍ଫୁରିଉଠେ ଦକ୍ଷିଣ ନୟନ !
ଘଟିବ କି ଅମଙ୍ଗଳ କିଛି ?
ନା···ନା, ଏହା ମୋର ମନର ବିକାର ।
ଯାହାର ପତି ଅଟନ୍ତି ମୁନିଶ୍ରେଷ୍ଠ ତପୋନିଷ୍ଠ ମହର୍ଷି ଗୌତମ,
ପିତା କୁଶପାଣି, ତା'ର କିବା ହେବ ଅମଙ୍ଗଳ ?

( ଗୌତମଙ୍କର ଛଦ୍ମବେଶରେ ଇନ୍ଦ୍ରଙ୍କର ପ୍ରବେଶ )

ଛ: ଗୌ: ଆହା, ନୟନ ହେଲା ସାର୍ଥକ
ବିଲୋକିଲି ଏ ବିମଳ-ମୂର୍ତ୍ତି ।

ଅହଲ୍ୟା କିଏ ? ପ୍ରାଣନାଥ ? (ପ୍ରଣାମ କରି)
ଏତେ ବେଳେ ଦାସୀ ତବ ହୋଇଲା ସ୍ମରଣ ?

ଛ: ଗୌ:—ପ୍ରାଣେଶ୍ୱରୀ ! ଅହର୍ନିଶି ମୁଖତବ
ଦୃଶ୍ୟହେଲା ମାନସ ପଟରେ ।
ନ ଲାଗିଲା ତପେ ମନ ମୋର ।
ସେ ନିମନ୍ତେ ତପ ତେଜି ଆସିଲି ଲେଉଟି ।

ଅହଲ୍ୟା—ସତେ ସ୍ୱାମୀ ? ମୋ ନିମନ୍ତେ ତପ ତେଜି ଆସିଲ ଆଶ୍ରମେ ?
ଅହୋ କି ଭାଗ୍ୟବତୀ ମୁହିଁ; ପାରିଛି ମୁଁ ତୁଷ୍ଟ କରି
ଇହକାଳ ପରକାଳ ଦେବତା ମୋହର ।

ଗୌ:—ତପରତ ଥିଲି ମୁହିଁ ନନ୍ଦନ କାନନେ ।
ପ୍ରତୀତ ହେଉଥିଲା ଚତୁର୍ଦ୍ଦିଗ ଶୁଷ୍କ ପ୍ରାୟ ।
କିନ୍ତୁ ତୁମ୍ଭଙ୍କୁ ଦେଖିବା ମାତ୍ରେ
ଜଣାଯାଏ କିବା ମୁହିଁ ପ୍ରବେଶିଛି ଅନ୍ୟ ଏକ ରାଜ୍ୟେ—
ଯେ ସ୍ଥାନରେ ବହେ ସଦା ମଳୟ ଅନିଳ,
ଭୁରୁ ଭୁରୁ ପୁଷ୍ପଗନ୍ଧେ ଉଲ୍ଲସିତ ହୁଏ ମନପ୍ରାଣ ।
କୋକିଳ ଦମ୍ପତି ଗାଏ ମିଳନର ସୁମଧୁର ଗୀତ ।
ଉଲ୍ଲସିତେ ନୃତ୍ୟ କରେ ମନ ପ୍ରାଣ ମୋର—
ପ୍ରକୃତିର ସେ ମିଳନ ଛନ୍ଦେ ।
ଅଙ୍ଗେ ଅଙ୍ଗେ ଭରିଯାଏ କାମନାର ବହ୍ନି ।

ଅହଲ୍ୟା—ଏ କି କୁହ ପ୍ରାଣନାଥ ନ ପାରେ ମୁଁ ବୁଝି ।
ନ ଶୁଣିଛି କର୍ଣ୍ଣେ କେବେ ତବ ମୁଖୁ ଏସନକ ବାଣୀ ।

ଛ: ଗୌ:—ପ୍ରାଣପ୍ରିୟେ ! ଏଯାବତ୍ ଥିଲି ମୁଁ ଅନ୍ତର
ତୁମ୍ଭ ଦର୍ଶନ ମାତ୍ରକେ ମନେ ଜାଗେ ଶିହରଣ ।
କାମଦେବ ପଞ୍ଚଶରେ ଜର୍ଜ୍ଜରିତ ତନୁ ମନ ମୋର
ପ୍ରୀତିଦାନ ଦେଇ ମୋରେ ଉଦ୍ଧର ଏ କଷ୍ଟୁ ।

ଅହଲ୍ୟା— ଏ କି ଅସଙ୍ଗତ ବାଣୀ ପ୍ରକାଶୁଛ ସ୍ୱାମୀ ?
ତପାଶ୍ରମେ ପ୍ରୀତିଭିକ୍ଷୁ ହୋଇ ମହାତ୍ମା ?

ଛ: ଗୌ:— ଜାଣେ ପ୍ରିୟା—ଜାଣେ ମୁଁ ସକଳ ।
କିନ୍ତୁ ମଦନ ଆଘାତେ ମୁହିଁ ପାଏ ବଡ଼ କଷ୍ଟ
ନ ପାରୁଛି ସହି ଆଉ, ରଖ ସଖୀ ରଖ ଗୋ ତୁରତେ ।
ବିଳମ୍ବ ମୋ ହୁଅଇ ଅସହ୍ୟ ।

ଅହଲ୍ୟା—(ସ୍ମିତହାସ୍ୟେ) ସ୍ୱାମୀ ତୁମ୍ଭେ ଦେବତା ମୋହର ।
ତୁମ୍ଭ ଆଦେଶ ପାଳନ ପ୍ରଥମ କର୍ତ୍ତବ୍ୟ ।
ଆସ ପ୍ରିୟ, ସାର୍ଥକ କରେ ମୋ ତନୁ ତୋଷି ପ୍ରୀତି ଦାନେ ।
(ଉଭୟଙ୍କର ପ୍ରସ୍ଥାନ)



## ଏକାଦଶ ଦୃଶ୍ୟ

( ତପରତ ମହର୍ଷି ଗୌତମ । ହଠାତ୍ ଧ୍ୟାନ ଭଙ୍ଗିଲୁ । )

ଗୌତମ—ଏ କ'ଣ ? ସହସା କମ୍ପାଇ ମୋର ଭଗ୍ନ ହେଲା ଧ୍ୟାନ ?
କର୍ଣ୍ଣ ଉଠେ ବାମନେତ୍ର ବାମବାହୁ ସହ ?
ଦିବାଲୋକେ ପ୍ରତେ ହୁଏ କୁଜ୍‌ଝଟିକା ସମ
ରହି ରହି ଶୁଣାଯାଏ ପେଚକର ଧ୍ୱନି ।
କିବା କିଛି ହେଲା ଅଘଟଣ ?
ମନ ମୋର ହୁଏ ଛନ୍ନ ଛନ୍ନ ନ ଲାଗଇ ଧ୍ୟାନ ଧାରଣାରେ
ବିଦାୟ ଲଗ୍ନରେ ମୋର ପତିପ୍ରାଣା ସୁନ୍ଦରୀ ଅହଲ୍ୟା
ବାଷ୍ପାକୁଳ କଣ୍ଠେ ଅନୁରୋଧ କରୁଥିଲା
ନ ଛାଡ଼ିବା ପାଇଁ ତାରେ କରି ଏକାକିନୀ
ନ ଶୁଣିଣ ବାଣୀ ତା'ର, ପ୍ରବୋଧି ମୁଁ ଆସିଲି ଅରଣ୍ୟେ ।
ପଡ଼ିଲାକି ପ୍ରମାଦ ତାହାରେ ?
ନାଃ, ଆଉ ନୁହେଁ । ଚଳିବି ମୁଁ ଆଶ୍ରମ ଉଦ୍ଦେଶ୍ୟେ ।
କିଛିଦିନ କରି ଅବସ୍ଥାନ—
ଆସିବି ମୁଁ ପୁନରପି ତପ ଅର୍ଥେ ଏଥି । (ପ୍ରସ୍ଥାନ)



## ଦ୍ୱାଦଶ ଦୃଶ୍ୟ

( ପ୍ରତିହିଂସାକ୍ରାନ୍ତ ଅସ୍ତବ୍ୟସ୍ତ ଭାବେ ଛଦ୍ମବେଶୀ ଗୌତମ ।
ପଛେ ପଛେ ବୃଦ୍ଧା ଅହଲ୍ୟା—ରକ୍ତକ୍ଳାନ୍ତା, ମୁକୁଳିତ କେଶା । )

ଅହଲ୍ୟା—କିଏ ? କିଏ ତୁମେ କହ ସତ୍ୟ କରି ।
ମୋ ପତିଙ୍କ ଛଦ୍ମବେଶେ ପଶି ମୋର ପୁରେ—
ସତୀର ଶ୍ରେଷ୍ଠ ସମ୍ପଦ କରିଲ ଲୁଣ୍ଠନ ।
କୁହ (କାନ୍ଦ) କିବା ଦୋଷେ ଦଣ୍ଡିଲ ଏସନ ?

ଛ: ଗୌ:—କି କାମନେ କରଗୋ ସନ୍ଦେହ ?
ମୁହିଁ ତବ ସ୍ୱାମୀ ମହର୍ଷି ଗୌତମ ।

ଅହଲ୍ୟା—ପାପିଷ୍ଠ ! ଦର୍ପାନ୍ଧ ! ମିଥ୍ୟାବାଦୀ !!
ଶବଳୁକ ମିଥ୍ୟାଭାଷୀ ଭୁଲାଇବୁ ମୋତେ ?
କହ, କହ ଭଣ୍ଡ କିଏ ଅଟୁ ତୁହି ।
ନୋହିଲେ ମୁଁ ଦେବି ଅଭିଶାପ—
ସାକ୍ଷୀ ରହି ଗଗନ ପବନ,
ସାକ୍ଷୀ ରହି ଦଶଦିଗପାଳ
ଭାବୁଛୁ କି ଅବଳା ମୁଁ—
ବନ୍ଧୁ ମୋର ସ୍ୱାମୀ ଛଦ୍ମରୂପ—
ଲୁଣ୍ଠି ମୋର ନାରୀତ୍ୱ—ସତୀତ୍ୱ—
ଚାଲିଯିବୁ ତୋ ଗନ୍ତବ୍ୟ ପଥେ ?
ନାଁ; ନ ହୋଇବ ତାହା ।
ନ ଛାଡ଼ିବ ନ ପାଇଣ ଉଚିତଫଳ ତବ ।
ଦେଖିବ ଜଗତ ଆଜ—ନାରୀ ନୁହେଁ ଅବଳା ଦୁର୍ବଳା ।
ନାରୀ ମଧ୍ୟ ହୁଏ ଆବର୍ତ୍ତିତା
ସୃଷ୍ଟି ସଂହାରଣୀ ରଣଚଣ୍ଡୀ ରୂପେ ।

(ଦୂରରୁ ଶୁଭୁଛି ଗୌତମଙ୍କର ସ୍ୱର—ଅହଲ୍ୟା ! ବଧୂସୂତା ! ଅହଲ୍ୟା !)

ଅହଲ୍ୟା—ଏଁ ? ଏ ତ ମୋର ସ୍ୱାମୀ କଣ୍ଠସ୍ୱର ?
କହୁଥିଲ ତୁମ୍ଭେ ପରା ମହର୍ଷି ଗୌତମ ?
ଶୁଣୁଛ ? ଶୁଣୁଛ ଏହା କା'ର କଣ୍ଠସ୍ୱର ?
କୁହ ତୁମ୍ଭେ ଅଟ କିଏ ?

ଦୂରରୁ—ଅହଲ୍ୟା ! ମୁଁ ଆସିଛି ଅହଲ୍ୟା !

ଅହଲ୍ୟା—ରହ କ୍ଷଣେରେ ହୀନ ନାରକୀ
ପାଇବୁ ତୋ ସମୁଚିତ ଶାସ୍ତି । (ପ୍ରସ୍ଥାନ)

ଛ: ଗୌ:—କି କରିବେ ଏବେ ?
ଏତେବେଳେ ପ୍ରବେଶିଲେ ମହର୍ଷି ଗୌତମ—

ଜାଣୁଛୁ ମୋ ନାହିଁ ପରିତ୍ରାଣ
ଯାଏ ଏବେ ଅପସରି ଏଥୁଁ । (ପ୍ରସ୍ଥାନ)
( ପ୍ରବେଶିଲନ୍ତି ଗୌତମ—ପଛେ ପଛେ ଅହଲ୍ୟା )
ଗୌତମ—ଅନ୍ତରହ ମୁଖ ତବ ଦୃଶ୍ୟ ହେଲା ମୋତେ ।
ସେ ନିମନ୍ତେ ତପ ତେଜି ଆସିଲି ମୁଁ ଏଥି ।
କହ ପ୍ରିୟେ ବଧୂସୁତା; କୁଶଳ ତ ଆଶ୍ରମେ ସକଳ ?
କୁଶଳେ ଅଛନ୍ତି ମୋର ପ୍ରିୟ ଗାଭୀଗଣ ?
ଉଦ୍ଧାଳକ ଆଦି ଯେତେ ପ୍ରିୟ ଶିଷ୍ୟ ମୋର
ଅଛନ୍ତିଟି ସକଳ କୁଶଳେ ?
ଏ କ'ଣ ପ୍ରିୟେ ? ଅବନତ କରି ମୁଖ ନ ଦିଅ ଉତ୍ତର ?
କି ହୋଇଛି ତବ ??
ଆସ ପ୍ରିୟେ ଭାଷ କିବା ଦୁଃଖ (ଆଲିଙ୍ଗନ ଉଦ୍ୟତେ)
ଅହଲ୍ୟା—ନାଁ—ନାଁ, ନ ଛୁଅଁ ମୋ ତନୁ ।
ଅଟେ ମହାକଳୁଷିତା—ଅପବିତ୍ର ମୁହିଁ ।
ଗୌତମ—ଏ କି କୁହ ପ୍ରାଣପ୍ରିୟା ବଧୀତା ନନ୍ଦିନୀ ?
ଅହଲ୍ୟା—ସତ୍ୟ ସ୍ୱାମୀ; ଇହକାଳ ପରକାଳ ତ୍ରାଣକର୍ତ୍ତା ମୋର
ଛଳେ କଇଅଛି କେହ୍ନ ନାଶିଛି ମୋ—ସର୍ବସ୍ୱ ଲୁଣ୍ଠନ ।
ଗୌତମ—କିଏ ? କିଏ ସେହ୍ନ ମୂଢ଼ ? ବିଷଧର ସର୍ପବିଳେ ପୁରାଇଲା ହସ୍ତ ?
ଅହଲ୍ୟା—ନ ଜାଣଇ ତାହା ।
ଗୌତମ—ନ ଜାଣ କେ ଲୁଣ୍ଠିଛି ସର୍ବସ୍ୱ ? ଆଚ୍ଛା, ବସୁଛି ମୁଁ ଯୋଗେ ।
ଦେଖିବି ମୁଁ କେ ପାପିଷ୍ଠ କରିଛି ଦୁଷ୍କର୍ମ ।
( ଯୋଗାସୀନ ହେବା ଓ କିଛିକ୍ଷଣପରେ ଉଠି )
ଇନ୍ଦ୍ର ! ଦେବାଧମ ଇନ୍ଦ୍ର !
ଅହଲ୍ୟା—ଇନ୍ଦ୍ର ?
ଗୌତମ—ରେ ମୂଢ଼ ଇନ୍ଦ୍ର ! ଅବିଳମ୍ବେ ହୁଅ ଉପସ୍ଥିତ । (ଇନ୍ଦ୍ର ପ୍ରବେଶ)

ଗୀତ

( କୁଆବୁଆ ହେବୁ—ବୃଥେ )

ଆରେ ଶଚୀପତି ଏଡ଼କି ଅନୀତି କପଟ ସନ୍ଥିଲୁ କିତରେ
ନାକ ଅଧିପତି ବୋଲାଇ ଦୁର୍ମତି ମାତା ସାଥେ କଲୁ ରତିରେ । (ପଦ)



ଗୁରୁର ବନିତା ସ୍ୱଭାବେ ତୋ ମାତା ତଳେ ନ ଦେଖିଲୁ ମତିରେ
ଧିକ ତୋ ଦେବତ୍ୱ ଧିକ ପିତାମାତ ଧିକ ତୋ ସ୍ୱର୍ଗ ସମ୍ପତ୍ତିରେ ।୧।
ତୁମ୍ଭ ସ୍ୱର୍ଗପୁରେ ଏହିପରି କରେ ଗୁରୁ ଦକ୍ଷିଣା ବିଅନ୍ତିରେ
ହୋଇ ଶ୍ରେଷ୍ଠ ଅତି କରିଲେ ଦୁର୍ମତି ଜାତିରେ କରିବ ଆପତ୍ତିରେ ।୨।
କାମେ ହୋଇ ବଶ ଯେଉଁଥିରେ ଆଶ କଲୁ ତଳେ ନ ବିଚାରିରେ
ମୋର ଶାପ ଦେହ ବହୁ ସହସ୍ରଯୋନୀ ଶରୀର ତୋ ଯାଉ ଭରିରେ ।୩।
ତୋହ ପରି ଆନ ନ କରିବେ ମନ ଧରିରେ ପାପ ଏସନରେ
ଗୋବିନ୍ଦ କହଇ ଦୂର ହୁଅ ତୁହି ନ ରହିଣ କ୍ଷଣେ ଏ ସ୍ଥାନରେ ।୪।

ରେ ଦେବାଧମ ଇନ୍ଦ୍ର ! ହୋଇ ତୁମ୍ଭ ଦେବକୁଳେ ଶ୍ରେଷ୍ଠ—
ହୋଇ ତୁମ୍ଭ ଦେବତା ସମ୍ରାଟ
ହୋଇ ତୁମ୍ଭ ଆଶ୍ରମ ନିବାସୀ
ବିଶେଷରେ ମୋର ପ୍ରିୟ ଶିଷ୍ୟ—
ଛଳେ ତୁମ୍ଭ ଗୁରୁପତ୍ନୀ କରିଲ୍ ହରଣ ?
ନ ରଖିଲୁ ଗୁରୁ ଲଘୁ ଜ୍ଞାନ ?
ଏହାକିରେ ତୋ ଗୁରୁ ଦକ୍ଷିଣା ?
ରେ ମୂର୍ଖ ! ଯେ ନିମନ୍ତେ ସାଜିଲୁ ନିର୍ମଳ,
ହେଉ ମୋର ଅଭିଶାପ—
ବହୁବୁ ଦେହରେ ତୋର ସହସ୍ରଭଗ ଯୋନୀ ।

ଇନ୍ଦ୍ର—ଗୁରୁଦେବ ! କ୍ଷମନ୍ତୁ—କ୍ଷମନ୍ତୁ ମୋ ଅପରାଧ ବାରେ ।

ଗୌତମ—କ୍ଷମା ? (ଅଟ୍ଟହାସ୍ୟ) କ୍ଷମାର ଅଯୋଗ୍ୟ ତୁମ୍ଭରେ ପାପାତ୍ମା ଇନ୍ଦ୍ର !
ବାକ୍ୟ ମୋର ନ ଟଳିବ କେବେ ।
ଦେଖି ତୋର ଏ କୁତ୍ସିତ ରୂପ—
ନ କରିବେ ଦୁଃସାହସ କେହି, କରିବାକୁ ତୋପରି ଦୁଷ୍କର୍ମ ।

ଇନ୍ଦ୍ର—ଗୁରୁଦେବ !

ଗୌତମ—ଯାଅ—ଦୂରହୁଅ ଏ ସ୍ଥାନରୁ ନ ରହିଣ ଲବେ ।
ତା ନୋହିଲେ ହେବୁ ଭସ୍ମୀଭୂତ ମୋର କୋପାନଳେ ।
ଯାଅ—(ଇନ୍ଦ୍ରର ପ୍ରସ୍ଥାନ)

ପାପିନୀ ଅହଲ୍ୟା; ନ ବୁଝିଣ ସ୍ୱରୂପ ତତ୍ତ୍ୱ
ପର ପୁରୁଷ ସାଥିରେ କରିଲୁ ପିରତି ?
ତୁହ ମଧ୍ୟ ଘେନ ଅଭିଶାପ—
ଏ ସୌନ୍ଦର୍ଯ୍ୟ ମୂର୍ତ୍ତି ତୋର ହେଉଥାଉ ପାଷାଣ ।
**ଅହଲ୍ୟା**—ନାଁ—ନାଁ ସ୍ୱାମୀ, ନାଁ···ଆଃ ।
ଶରୀର ମୋ ଲାଗଇ ଅବଶ ।
ରକ୍ଷାକର ରକ୍ଷାକର ସ୍ୱା···ମୀ ! (ପାଷାଣ ହୋଇଯିବା)
**ଉଦ୍ଧାଳକ**—(ସବ୍ୟସ୍ତେ ପ୍ରବେଶ) ଗୁରୁଦେବ ! ଗୁରୁଦେବ !
ଏଁ ଏ କି କଲ ତୁମ୍ଭେ ?
ହୋଇ ତୁମ୍ଭେ ବ୍ରହ୍ମଜ୍ଞାନୀ—ତ୍ରିକାଳଦର୍ଶୀ,
ପତିଗତପ୍ରାଣୀ ମାତାରେ ମୋହର
ଅଜ୍ଞାନୀ ପରାଏ ତୁମ୍ଭେ ଦେଲ ଅଭିଶାପ ?
ଗୌତମ—ଉଦ୍ଧାଳକ ?
**ଉଦ୍ଧାଳକ**—ହଁ ପ୍ରଭୁ ଜାଣେ ମୁଁ ସକଳ ।
ଦେବରାଜ ଇନ୍ଦ୍ର, ନାନାଛଳେ ଇଚ୍ଛି ଥିଲେ ମାତା ଅଙ୍ଗ ସଙ୍ଗ ।
ପରିଣାମରେ ମାତା ଭର୍ତ୍ସିଲେ ଅନେକ ।
ତେଣୁ ସେହୁ ହୋଇ ନିରୁପାୟ—
ନେବାପାଇଁ ପ୍ରତିଶୋଧ—ଧରୁଥିଲେ ତବରୂପ—
ଆସି ଏଥି ହରଲେ ମାତାଙ୍କୁ,
ନ ପାରିଲେ ଜାଣି କେହ୍ନ ତାହା ।
ହେଲେ କ୍ରୋଧବଶେ ହରାଇଣ ସ୍ୱତାତ୍ତ୍ୱିକ ଜ୍ଞାନ
ଦେଲ ଅଭିଶାପ ନିଷ୍ପାପ—ନିଷ୍କପଟ ମାତାରେ ମୋହର ?
ଗୌତମ—ସତ୍ୟ କିବା ଉଦ୍ଧାଳକ—ସତ୍ୟ ଯାହା ଶୁଣିଲି ମୋ ପାଶେ ?
**ଉଦ୍ଧାଳକ**—ସତ୍ୟ ପ୍ରଭୁ ! ସତ୍ୟ ଏହା ସୂର୍ଯ୍ୟାଲୋକ ସମ ।
ଗୌତମ—ଆଃ, ଉଦ୍ଧାଳକ ! ଅଜ୍ଞାନୀ ମୁଁ ହୋଇ କ୍ରୋଧେ ଅନ୍ଧ
ସ୍ୱତାତ୍ତ୍ୱିକ ଜ୍ଞାନ-ଶୂନ୍ୟ ହୋଇ ଦେଲି ଯେ ଶାପ—
ତାହାଫଳେ ସୁନ୍ଦରୀ ଅହଲ୍ୟା ହୋଇଲେ ପାଷାଣୀ ।
ଆଃ; କି କଲି କି କଲି ମୁଁ ମୂଢ଼ ।
( ଅହଲ୍ୟାଙ୍କ ମୂର୍ତ୍ତିରେ ମୁଣ୍ଡ ବାଡ଼େଇ କାନ୍ଦନ୍ତି)

ଅହଲ୍ୟା, ବିଧିସୁତା, ପ୍ରାଣପ୍ରିୟା ମୋର
ଏ କି ହେଲା ଏ କି ହେଲା ତବ ?
ଛୁଇଁ ଛୁଇଁ ମୂଢ଼ମତି ମୁହିଁ ତବ ସ୍ୱାମୀ
ରହିତ ହୋଇଣ ହିତାହିତ ଜ୍ଞାନେ
ଅଦୋଷେ ମୁଁ ଦେଲି ଅଭିଶାପ ?

ଉଦ୍ଧାନନ୍ଦ—ଗୁରୁଦେବ ! କି କହିବି, ମହାଜ୍ଞାନୀ ତୁମ୍ଭେ ।
ଯା ହେବାର ହୋଇଅଛି ନ ଆସିବ ଫେରି ଆଉ ତାହେ
ସେଥି ନିମନ୍ତେ ନ କର କ୍ରନ୍ଦନ—କିନ୍ତୁ;
କିପରି ମାତା ମୋହର ତବଶାପୁ ହୋଇବେ ଉଦ୍ଧାର—
ତେଜି ଏହି ପାଷାଣୀ ଶରୀର ।
ତବ ପଦେ ଏତିକି ମାଗୁଣି ।

ଗୌତମ—ଉଦ୍ଧାନନ୍ଦ ! ହଁ । ଅଛି ।
ଅଛି ଏକମାତ୍ର ପ୍ରତିକାର ମୋ ଅଭିଶାପର
ପାଷାଣ ସ୍ୱରୂପେ ରହି ମୃତା ତବ ପାଷାଣୀ ଅହଲ୍ୟା—
ଅହରହ କରିବେ ସ୍ମରଣ—
ପାପତାପହାରୀ-ଦୂର୍ବାଦଳ-ଶ୍ୟାମ-ରାମ ନାମ
ସ୍ୱଳ୍ପକାଳ ମଧ୍ୟେ—ବୈକୁଣ୍ଠବିହାରୀ ବିଷ୍ଣୁ
ଅବତୀର୍ଣ୍ଣ ହେବେ ମର୍ତ୍ତ୍ୟଧାମେ—
ଦଶରଥ ରାଜାଗୃହେ—ବହି ସେହି ନାମ ।
ତାଙ୍କ ପଦରଜ ସ୍ପର୍ଶେ—
ନିଜ ସ୍ୱରୂପ ଲଭିବେ ପ୍ରାଣପ୍ରିୟା ସୁନ୍ଦରୀ ଅହଲ୍ୟା—
ତେଜି ଏହି ପାଷାଣ ସ୍ୱରୂପ ।
କିନ୍ତୁ; ଏବେ କି କରିବି ମୁହିଁ ?
ପ୍ରାଣପ୍ରିୟା ବିଧିସୁତା ! ବିଧି କିବା ଲେଖିଥିଲେ ଏହା ତବ ଭାଲେ ?
ତୁମ୍ଭ ବିନା କିପରି ବା ଧରିବି ଏ ପ୍ରାଣ ?
ଯାଉଛି, ଯାଉଛି ମୁଁ ବନଘୋରେ
ଆଚରିବି ତପ ତବ ଉଦ୍ଧାର ନିମନ୍ତେ ।
ଯେଉଁକାଳେ ରାମଚନ୍ଦ୍ର ପାଦସ୍ପର୍ଶେ ଲଭିବ ସ୍ୱଦେହ,

ସେ କାଳେ ମିଳିବ ମୁହିଁ ତବ ସନ୍ନିକଟେ—
କରିବାକୁ ତବ ଅଭ୍ୟର୍ଥନା ।
ଯାଉଛି, ଯାଉଛି ଆଗୋ ମୋ ପାଷାଣୀ ପ୍ରିୟା
ଥାଅ ଏଥି ରହି ମତ୍ତ ରାମଚନ୍ଦ୍ର ପଦେ ।
( ପାଷାଣୀ ମୁଖ ଚୁମ୍ବନ କରି ପ୍ରସ୍ଥାନ )

ଉଦ୍ଧାଳକ—ମା ! ଏହା କିବା ଲେଖାଥିଲା ଭାଲପଟେ ମମ—
କରିବାକୁ ସନ୍ଦର୍ଶନ ତୁମ୍ଭର ଏ କଷ୍ଟ ?
ନାଁ । ନ ପାରୁଛି—ନ ପାରୁଛି ସହି ଏହା ।
ମୁହିଁ ମଧ୍ୟ ଆଚରିବି ତପ ତବ ଉଦ୍ଧାର ନିମନ୍ତେ ।
କରୁଥିବି ସେବା ତବ ପାଷାଣୀ ଉପରେ ।
କର ଆଶୀର୍ବାଦ ମା ଗୋ ପାଷାଣୀ ଜନନୀ
ପୂର୍ଣ୍ଣ କାମ ହୁଏ ଯେହ୍ନେ ତପସ୍ୟାରେ ମୋର ।
( ପ୍ରଣାମପୂର୍ବକ ପ୍ରସ୍ଥାନ )

( କରୁଣ ବାଦ୍ୟର ତାଳେ ତାଳେ ପ୍ରବେଶିଛନ୍ତି ରାମ ଲକ୍ଷ୍ମଣ ସହ ମୁନି ବିଶ୍ୱାମିତ୍ର । )

ବିଶ୍ୱାମିତ୍ର—ଶୁଣିଲ ତ ରାମଚନ୍ଦ୍ର ଅହଲ୍ୟା ଚରିତ ?

ଗୀତ

ରଘୁବୀର ଏ କରୁଣ କାହାଣୀ — କଲ ଶ୍ରବଣ ଦେଖ ଏ ପାଷାଣୀ ।
ତବ ପଦେ ଲୟ ରଖି ସେହିନୁ — ବନ୍ଦୀ ରହିଛି ଏ ପାଷାଣ ତନୁ ।
ତବ ପଦରେଣୁକୁ ଆଶ୍ରା କରି — ଅହର୍ନିଶି ଘୋଷେ ନାମ ତୁମ୍ଭରି ।
କର ପରିତ୍ରାଣ ବନ୍ଦୀ ହୃଦୟା — ବିଧିସୁତା ଲଭୁ କରୁ ସ୍ୱ କାୟା ।
ତ୍ରିଜଗତେ ବିଖ୍ୟାତୁ ତବ ନାମ — ଶ୍ରୀରାମଚନ୍ଦ୍ର ଅହଲ୍ୟା ତାରଣ ।
ଗୋବିନ୍ଦ ମିନତି ତା ମାଥେ ପଦ — ଦେଇ ହରଣ କର ତା ଆପଦ ।

ରାମଚନ୍ଦ୍ର ! ନ କରି ବିଳମ୍ବ, ବତ୍ସେ—
ରଖ ତବ ପଦ ଶିଳା ଶିରେ ।
ତବ ପଦରେଣୁ ସ୍ପର୍ଶେ ଏବେ—
ନିଜ ସ୍ୱରୂପ ଲଭୁ ପାଷାଣୀ ଅହଲ୍ୟା
ଧୌତ କରି ପୂର୍ବ ପାପ ତାପ ।

ରାମ—ଏ କି କୁହ ମୁନିଶ୍ରେଷ୍ଠ !
ମହାମୁନି ଗଉତମ ନାରୀ ମଥାରେ ମୁଁ ଦେବି ପଦଧୂଳି ?


ବିଶ୍ୱାମିତ୍ର—ହଁ ରାମଚନ୍ଦ୍ର ! ତୁଅ ତବ ପଦରଜ
 ମୁକ୍ତ ହେଉ ସୁନ୍ଦରୀ ଅହଲ୍ୟା ।
ରାମ—ନ ପାରଇ ବୁଝି ମୁହିଁ ଆହେ ମୁନିଶ୍ରେଷ୍ଠ !
 ଭ୍ରମ କିବା ହୋଇଛି ତୁମ୍ଭର ?
 ମୁଁ ଅଟେ ସାମାନ୍ୟ ନର କ୍ଷତ୍ରିକୁଳେ ଜାତ
 କିପରି ରଖିବ ପଦ, ଗୁରୁପତ୍ନୀ-ବ୍ରହ୍ମ ସୁତା ମାଥେ ?
ବିଶ୍ୱାମିତ୍ର— ନୁହଁ ତୁମ୍ଭେ ସାମାନ୍ୟ ମାନବ ।
 ରାମଚନ୍ଦ୍ର—ସ୍ୱୟଂ ପରଂବ୍ରହ୍ମ ।
 ଧରଣୀର ନିବାରଣ ଅର୍ଥେ ନେଇଅଛ ମର୍ତ୍ତ୍ୟେ ଅବତାର—
 କ୍ଷତ୍ରିକୁଳେ ଦଶରଥ କୋଳେ ।
 ଜାଣେ ମୁଁ ସକଳ ବୃତ୍ତାନ୍ତ ।
 ନ କରଣ ଦ୍ୱିଧା ତୁମ୍ଭେ ତୁଅ ପଦଧୂଳି ।
ଲକ୍ଷ୍ମଣ—ଭାଇ ! ଗୁରୁଙ୍କ ଆଦେଶ ସଦା ଅଟେ ପାଳନୀୟ—
 ଯେଣୁ ଗୁରୁଶ୍ରେଷ୍ଠ ମହାତ୍ମନେ ।
 ତାଙ୍କର ଆଦେଶେ ଜ୍ୟେଷ୍ଠ ନ ଚିନ୍ତଣ ଶୁଭାଶୁଭ କିଛି,
 ତୁଅ ତବ ପଦରଜ ବ୍ରହ୍ମସୁତା ମାଥେ ।
ରାମ—ତାହା ହିଁ ହେଉ ଲକ୍ଷ୍ମଣ ।
 ସାକ୍ଷୀ ରହି ଗଗନ ପବନ,
 ସାକ୍ଷୀରହି ଦଶ ଦିଗପାଳ
 ସାକ୍ଷୀ ରହି ଚନ୍ଦ୍ର ସୂର୍ଯ୍ୟ ତାରା ।
 ଆଉ ସାକ୍ଷୀ ରହି ସ୍ୱୟଂ ଗୁରୁଦେବ
 ରଖୁଛି ମୁଁ ପଦ ମୋର ପାଷାଣୀ ମଥାରେ—
 ପାଳି ମୋର ଗୁରୁଙ୍କ ଆଦେଶ ।
 ଦୋଷାଦୋଷ ନାହିଁ ମୋର ତହିଁ ।
 ( ପାଷାଣୀ ମଥାରେ ପାଦ ସ୍ଥାପନ, ସ୍ୱର୍ଗରୁ ପୁଷ୍ପ ବୃଷ୍ଟି, ଅହଲ୍ୟାଙ୍କର ପୁନଃ ଶରୀରପ୍ରାପ୍ତି । )
ବିଶ୍ୱାମିତ୍ର—ଧନ୍ୟ, ଧନ୍ୟ ରାମଚନ୍ଦ୍ର—ଅହଲ୍ୟା ତାରଣ ।
ଅହଲ୍ୟା—କିଏ ? ନବ-ଦୁର୍ବାଦଳ-ତନୁ
 କୋଟି କାମ ଜିଣି ରୂପକାନ୍ତି,
 ହସ୍ତେ ଶୋହେ କୋଦଣ୍ଡ କାର୍ମୁକ

ସ୍ମିତ-ହାସ୍ୟ-ମୁଖ ତବ ମୁନିମନଲୋଭା
କିଏ ? କିଏ ତୁମ୍ଭେ ଉଭାହେଲ ସମ୍ମୁଖରେ ମୋର ?
ପାଇଲି କିପରି ମୋର ନବ କଳେବର
ଦୂରକରି ପୂର୍ବ ଅଭିଶାପ ?

ବିଶ୍ୱାମିତ୍ର—ମୁନିପତ୍ନୀ ! ଯାର ନାମ ସ୍ମରୁଥିଲ ପାଷାଣ ଶରୀରେ
ଏହି ସେହି ରାମଚନ୍ଦ୍ର ରଘୁକୁଳ ନାଥ ।
ଦଶରଥ କୋଳେ ଜାତ ସ୍ୱୟଂ ପରଂବ୍ରହ୍ମ ।
ଧରା ଭାର ବିନାଶନେ ବହି ନରରୂପ—
ବିଚରଣ କରୁଛନ୍ତି ସାଥେ ଘେନି ଅନୁଜ ଲକ୍ଷ୍ମଣ ।
ତାଙ୍କ ପଦରଜ ସ୍ପର୍ଶେ ଲଭିଲ ସ୍ୱଦେହ—
ଧୌତ କରି ପୂର୍ବ ଅଭିଶାପ ?

ଅହଲ୍ୟା—ପରଂବ୍ରହ୍ମ-ନାରାୟଣ ଆହେ ରାମଚନ୍ଦ୍ର
କହ ପ୍ରଭୁ କି ନିମନ୍ତେ ଉଦ୍ଧରିଲ ମୋତେ ?
ଥିଲି ମୁହିଁ ପାଷାଣ ଶରୀରରେ ମୋର ପୂର୍ବ ଦୁଷ୍କୃତ ବଳରୁ
ଉଦ୍ଧାର କରିଲ ମୋତେ—
କିପରି ବା ଦେଖାଇବି ମୁଖ ମୁହିଁ ଜଗତ ସମ୍ମୁଖେ—
ବହି ମୋର ପାପ ଭାର ଏହି ମଥା ପରେ ?
ଛି ଛି କାର କରିବ ଜଗତ ଅସତୀ ଅହଲ୍ୟା ବୋଲି ।
କିପରି ସହିବି ପ୍ରଭୁ ଧରି ନର ଦେହ ?

ରାମ—ମହାସତୀ ଅଟ ତୁମ୍ଭେ ନୁହଁ ଗୋ ଅସତୀ ।
ବିନାଦୋଷେ ଲଭିଲ ଦୁର୍ଗତି ।
ଦେଉଅଛୁ ବର ସତୀ
ମହାସତୀ ରୂପେ ଗଣ୍ୟ ହେବ ଧରାତଳେ
ପ୍ରାତଃକାଳେ ସ୍ମରିବ ଯେ ନର ତୁମ୍ଭ ନାମ
ସର୍ବପାପ ଧ୍ୱଂସ ହେବ ତା'ର, ଅନ୍ତଃକାଳେ ବସିବ ବୈକୁଣ୍ଠେ
ସେ ନିମନ୍ତେ ମାତା ତୁମ୍ଭେ ନ କର ଶୋଚନା ।

ବିଶ୍ୱାମିତ୍ର—ଧନ୍ୟ, ଧନ୍ୟ ରାମଚନ୍ଦ୍ର—ଭକତ ବତ୍ସଳ ।

ଗୌତମ—(ପ୍ରବେଶି) ରାମଚନ୍ଦ୍ର ପରଂବ୍ରହ୍ମ ନର-ଅବତାର
ଗ୍ରହଣ କର ପ୍ରଣାମ ଭାଗ୍ୟହୀନ ଗୌତମ ଋଷିର ।

ଯେଉଁ ପଦ ଦର୍ଶନ ନିମନ୍ତେ ବ୍ରହ୍ମାଶିବ ନୁହନ୍ତି ଭାଜନ—
ଧନ୍ୟ ହେଲି କରିତା ଦର୍ଶନ । (ପ୍ରଣାମ)

ଅହଲ୍ୟା—ସ୍ୱାମୀ ! (ପ୍ରଣାମ)'

ଗୌତମ—ପ୍ରାଣପ୍ରିୟା ଧର୍ମସୁତା ! (ଆଲିଙ୍ଗନ କରି)
ଧନ୍ୟ ହେଲି ପୁନର୍ବାର ଲଭିଣ ତୁମ୍ଭଙ୍କୁ ।
ଆସ ଏହି ଅବସରେ
ବନ୍ଦଣ ଚରଣ ସେହି ପରଂବ୍ରହ୍ମ ଦୁର୍ବାଦଳ ଶ୍ୟାମ-
ଧା[illegible] କରିବା ଏବେ ଆମ୍ଭ ନରଜନ୍ମ ।

—ସ୍ତୁତି—

( ଜୟ ଜୟ କାମପାଳ—ବୃତ୍ତେ )

ଶ୍ରୀରାମ ପରମବ୍ରହ୍ମ ଦଶରଥ ସୁତ
ନରଦେହେ ଧରାଧାମେ ହୋଇଛ ଉଦ୍ଭୂତ ।୦।
ବଇକୁଣ୍ଠ ତେଜି ଧରାଭାର[illegible]ବାରିଣେ
ଯୁଗେ ଯୁଗେ ଅବତାର ନିଅ ଧରାଧାମେ ।୧।
ନାଭି କମଳରୁ ତବ ବ୍ରହ୍ମା ହେଲେ ଜାତ
ତୋ ନାମ ଭୋଳେ ନାରଦ ନୃତ୍ୟନ୍ତି ସତତ ।୨।
ଆଗମନ କଲ ଏଥି ଦୟାବନ୍ତ ମନେ
ସକଳ ପାପକୁ ଧୋଇ ଅହଲ୍ୟା ତାରଣେ ।୩।
ସାନୁଜ ସହିତ ତବ ମଧୁର ମୂରତି
ଭକ୍ତଭାବେ କାଳେ କାଳେ ପଦେ ରହୁ ମତି ।୪।
ଆନ ନ ଲୋଡ଼ଇ ଏହି କାମନା ମୋ ମନେ
ଦ୍ୱିଜ ଗୋବିନ୍ଦ ପ୍ରଣତି କରେ ଶ୍ରୀଚରଣେ ।୫।

( ସ୍ତୁତି ଅନ୍ତେ ସର୍ବେ ପ୍ରସ୍ଥାନ )

